# ସପ୍ତର୍ଷି

ସଂକଳକଗଣ

ଶ୍ରୀ ବ୍ରଜମୋହନ ମହାନ୍ତି
ଶ୍ରୀ ପରମେଶ୍ୱର ତ୍ରିପାଠୀ
ଶ୍ରୀ ସୂର୍ଯ୍ୟନାରାୟଣ ଦାସ



୨୭ ଫେବୃଆରୀ ୧୯୭୭

ଡ଼: ପଦ୍ମଭୂଷଣ ରାଧାନାଥ ରଥ
ଶ୍ରୀ ଗୋପୀନାଥ ମହାନ୍ତି
ଶ୍ରୀ ବିପିନବିହାରୀ ଚୌଧୁରୀ
ଶ୍ରୀ ଲାଲା ନଗେନ୍ଦ୍ରକୁମାର ରାୟ
ଶ୍ରୀ ବାଳକୃଷ୍ଣ ଦାଶ
ଡ଼: ପଦ୍ମଶ୍ରୀ ସତ୍ୟନାରାୟଣ ରାଜଗୁରୁ
ଶ୍ରୀ ଗୋକୁଳଚନ୍ଦ୍ର କର

## ଉତ୍କଳ ପାଠକ ସଂସଦ

ମୂଲ୍ୟ : ସାତଟଙ୍କା ମାତ୍ର

# ସପ୍ତରଶ୍ମି

## ଲେଖକଗଣ

ଅଧ୍ୟାପକ କୁଳମଣି ଜେନା
ଅଧ୍ୟାପକ ପଠାଣି ପଟ୍ଟନାୟକ
ଶ୍ରୀ ଘନେଶ୍ୱର ତ୍ରିପାଠୀ
ଅଧ୍ୟାପକ ମୃତ୍ୟୁଞ୍ଜୟ ନାୟକ
ଶ୍ରୀ ଭଗୀରଥି ନେପାକ
ଅଧ୍ୟାପକ ଶିବରାମ ପାତ୍ର
ଶ୍ରୀ ପ୍ୟାରୀମୋହନ ମହାନ୍ତି

ପରିବେଷକ :
**ଉତ୍କଳ ପାଠକ ସଂସଦ**

ପ୍ରାପ୍ତିସ୍ଥାନ :
**ଓଡ଼ିଶା ବୁକ୍ ଷ୍ଟୋର**
**ବିନୋଦବିହାରୀ, କଟକ-୨**



ଓଡ଼ିଶାରେ ସଂଖ୍ୟାଧିକ ମହାନ ବ୍ୟକ୍ତି ଜନ୍ମ ହୋଇ ସାହିତ୍ୟ, ଅନୁବାଦ, ଗବେଷଣା, ଚିତ୍ରକଳା, ସଙ୍ଗୀତ, ନୃତ୍ୟ, ଅଭିନୟ, ସ୍ଥାପତ୍ୟ ଶିଳ୍ପ, ଜନସେବା ଏବଂ ଇତିହାସ ଓ ବିଜ୍ଞାନ କ୍ଷେତ୍ରରେ ଏ ରାଜ୍ୟ ପାଇଁ ଆନ୍ତର୍ଜାତୀୟ ସମ୍ମାନ ଅର୍ଜନ କରୁଥିଲେ ମଧ୍ୟ ସେମାନଙ୍କର ଜୀବନ-ପରିଚୟ, କୃତି-ଆଲେଖ୍ୟ ପାଇବା ଦୁଷ୍କର ହେଉଛି । ପୂଜ୍ୟ ପୂଜାର ପରମ୍ପରା ଯେ ଗୋଟିଏ ଜାତିର ସାଂସ୍କୃତିକ ବିକାଶକୁ ବଳିଷ୍ଠ ଓ ଉନ୍ନତ କରେ ଏ କଥା ଆମେ ଅନେକ ସମୟରେ ଭୁଲି ଯାଉଛୁ ।

ତେଣୁ ଉତ୍କଳ ପାଠକ ସଂସଦ ପୂଜ୍ୟପୂଜାର ପରମ୍ପରା ରକ୍ଷା ପାଇଁ ଏକ ପଦକ୍ଷେପ ନେଇଛି ଏବଂ ପର୍ଯ୍ୟାୟକ୍ରମେ ଉତ୍କଳର ମହାନ ବ୍ୟକ୍ତିମାନଙ୍କୁ ସମ୍ମାନିତ କରି ସେମାନଙ୍କର ଜୀବନୀକୁ ପୁସ୍ତକ ଆକାରରେ ପ୍ରକାଶ କରିବା ପାଇଁ ଉଦ୍ୟମ କରି ଆସିଛି ।

ଗତ ବର୍ଷ ପ୍ରକାଶିତ "ପ୍ରତିଭା-ପରିଚୟ" ପୁସ୍ତକରେ ସାହିତ୍ୟ ସାଧକ କାଳନ୍ଦୀଚରଣ ପାଣିଗ୍ରାହୀ, କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ, ନାଟ୍ୟକାର କାର୍ତ୍ତିକକୁମାର ଘୋଷ, ସାହିତ୍ୟିକ ଓ ସାମ୍ବାଦିକ ଉଦୟନାଥ ଷଡ଼ଙ୍ଗୀ, ମଞ୍ଚଗୁରୁ ମାଷ୍ଟର ମଣିଆ, ସ୍ୱର ସାଧକ ନିମାଇଁ ହରିଚନ୍ଦନ, ପ୍ରକାଶକ ଅନନ୍ତ ମିଶ୍ର ପ୍ରମୁଖ ସାତ ଜଣ ବିଶିଷ୍ଟ ବ୍ୟକ୍ତିଙ୍କ ଜୀବନୀ ଓ କୃତିତ୍ୱ ଆଲୋଚିତ ହୋଇଛି ।

ଆମେ ଆଶା କରୁ ଏ ଜୀବନୀଗୁଡ଼ିକ ଉତ୍କଳର ଅସଂଖ୍ୟ ପାଠକ ପାଠିକାଙ୍କୁ ଆଲୋକ ପ୍ରଦାନ କରିବ ।



ଓଡ଼ିଆ ସମ୍ବାଦ ସାହିତ୍ୟର ଜନକ ।।

# ରାଧାନାଥ

ଅଧ୍ୟାପକ **ଶ୍ରୀ କୁଳମଣି ଜେନା**

ଶ୍ରୀ ରାଧାନାଥ ରଥ ସମଗ୍ର ଓଡ଼ିଶାରେ ଏକ ସୁପରିଚିତ ନାମ ।

ଶ୍ରୀ ରଥଙ୍କର ପରିଚୟ ଓ ପ୍ରଶଂସା କେବଳ ଓଡ଼ିଶାର ପୁରପଲ୍ଲୀରେ ସୀମିତ ନୁହେଁ, ସମଗ୍ର ଭାରତରେ ମଧ୍ୟ ସୁପରିବ୍ୟାପ୍ତ । ସେ ବହୁଗୁଣର ଅଧିକାରୀ ହୋଇଥିବାରୁ, ଦେଶର ଜନସାଧାରଣ ବିଭିନ୍ନ ସମୟରେ ଅତ୍ୟନ୍ତ ସମ୍ମାନର ସହିତ ତାଙ୍କୁ ସ୍ମରଣ କରି ତାଙ୍କର ପ୍ରତ୍ୟକ୍ଷ ସହଯୋଗ କାମନା କରିଥାନ୍ତି । ସେ ଏକାଧାରରେ ପ୍ରଖ୍ୟାତ ରାଜନୀତିଜ୍ଞ, ସ୍ୱାଧୀନତା ସଂଗ୍ରାମୀ, ସମାଜସେବୀ, ନିଷ୍ଠାପର ସାମ୍ବାଦିକ, ସମର୍ଥ ସମ୍ପାଦକ, ପ୍ରତିଭାଶାଳୀ ଲେଖକ, ବହୁଶାସ୍ତ୍ରଦର୍ଶୀ ପଣ୍ଡିତ, ସୁବକ୍ତା, ସୁସଂଗଠକ, ଶିକ୍ଷାବିତ୍, ସୁଶାସକ, ଗୁଣଗ୍ରାହୀ ପୃଷ୍ଠପୋଷକ, ସଂସ୍କୃତି ବିଶ୍ୱାସୀ ଓ ପରଦୁଃଖ କାତର ଧର୍ମପ୍ରାଣ ବ୍ୟକ୍ତି ଭାବରେ ସର୍ବଜନ ସୁପରିଚିତ । ସେ ଭାରତର ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇ ଓ କଂଗ୍ରେସ ଦଳର ଜନୈକ ବିଶିଷ୍ଟ ସଭ୍ୟ ଭାବରେ ରାଜନୀତିରେ ସକ୍ରିୟ ଅଂଶ ଗ୍ରହଣ କରିଥିବାରୁ, ବିଭିନ୍ନ ସମୟରେ ଓଡ଼ିଶା ପ୍ରଦେଶର ମନ୍ତ୍ରୀପରିଷଦର ସଭ୍ୟ ପଦ ଅଳଂକୃତ କରି ଓଡ଼ିଶାର ପ୍ରଶାସନିକ କ୍ଷେତ୍ରରେ ଅଭିନବ ଦକ୍ଷତାର

ସେତେବେଳେ ଦେଶରେ ଯାହା ପରିସ୍ଥିତି, ସେଥିରୁ ଦୃଷ୍ଟିରେ ସରକାରୀ ବୃତ୍ତିଟିଏ ଲାଭ କରିବା କେବଳ ଆନନ୍ଦର ନୁହେଁ ସୌଭାଗ୍ୟର ବିଷୟ । କିନ୍ତୁ ବୃତ୍ତିଟିଏ ପାଇଥିଲେ ମଧ୍ୟ ରାଧାନାଥ ଆଦୌ ସୁଖୀ ନଥିଲେ ; ରାଧାନାଥ ସ୍ୱଭାବରେ ଅତ୍ୟନ୍ତ ମେଧାବୀ ଥିବାରୁ ତାଙ୍କର ଅଧ୍ୟୟନ ପରୀକ୍ଷା ପାଇଁ ଉଦ୍ଦିଷ୍ଟ ପାଠ୍ୟ-ପୁସ୍ତକ ମଧ୍ୟରେ ସୀମିତ ନଥିଲା । ସ୍କୁଲ ପଢ଼ା ବାହାରେ ବହୁ ପୁସ୍ତକ ପଢ଼ିବାକୁ ସେ ଭଲ ପାଉଥିଲେ ଏବଂ ସ୍କୁଲ ପରିବେଶ ମଧ୍ୟରେ ବକ୍ତୃତା, ସଭା, ଆଲୋଚନା ଓ ରଚନା ଲିଖନ ଆଦିରେ ଅଂଶ ଗ୍ରହଣ କରୁଥିବାରୁ ତାଙ୍କ ପକ୍ଷରେ ଅନ୍ୟାନ୍ୟ ବହୁ କଥା ପଢ଼ିବା ଓ ଜାଣିବା ଅତ୍ୟାବଶ୍ୟକ ହୋଇପଡୁଥିଲା । ବହୁ ବିଷୟରେ ଜ୍ଞାନ ଆହରଣ କଲାବେଳେ ପରାଧୀନ ଭାରତର ଦୁର୍ଦ୍ଦଶାର କଥା ମଧ୍ୟ ତାଙ୍କ କାନରେ ବାଜୁଥିଲା । ମହାତ୍ମା ଗାନ୍ଧିଙ୍କ ଆହୂତ ଅସହଯୋଗ ଆନ୍ଦୋଳନ ସେତେ-ବେଳକୁ ଆରମ୍ଭ ହୋଇ ନଥିଲେ ମଧ୍ୟ ବ୍ରିଟିଶ ସରକାରଙ୍କ ବିରୁଦ୍ଧରେ ପରାଧୀନ ଦେଶର ନାଗରିକଙ୍କ ମନରେ ସୃଷ୍ଟି ହୋଇଥିବା ପୁଞ୍ଜୀଭୂତ ଅସନ୍ତୋଷ ପ୍ରକାଶ କରିବା ନିମନ୍ତେ ଅନୁକୂଳ ବାତାବରଣ ସୃଷ୍ଟି ହୋଇ ସାରିଥିଲା । ସମଗ୍ର ଭାରତରେ ଗାନ୍ଧିଜୀଙ୍କର ନାମ ଓ ଉତ୍କଳରେ ପଣ୍ଡିତ ପଣ୍ଡିତ ଗୋପବନ୍ଧୁଙ୍କ ନାମ ବେଶ ଶୁଣା ଯାଉଥିଲା । ଏ ଦେଶର ଶିକ୍ଷିତ ଯୁବକ ବ୍ରିଟିଶ ସରକାରଙ୍କ ଅଧୀନରେ ଯେପରି ଗୋଲାମୀ ନକରି ଦେଶ ମାତୃକାର ସେବାରେ ଜୀବନୋତ୍ସର୍ଗ କରିବେ ସେ ଦିଗରେ ପଣ୍ଡିତ ଗୋପବନ୍ଧୁ ଦୃଢ଼ ଆହ୍ୱାନ ଦେଇ ସାରିଥିଲେ ଏବଂ ଇଂରେଜ ସରକାରଙ୍କ ଗୋଲାମିଗିରି କରିବାରେ ସହାୟକ ହେବା ଉଦ୍ଦେଶ୍ୟରେ ପ୍ରଚଳିତ ଶିକ୍ଷା ବ୍ୟବସ୍ଥା ପରିବର୍ତ୍ତେ କିପରି ଉପଯୁକ୍ତ ଶିକ୍ଷା ଲାଭ କରିବା ସଙ୍ଗେ ସଙ୍ଗେ ସେବାମନୋଭାବାପନ୍ନ ସ୍ୱାଧୀନଚେତା ଚରିତ୍ରବାନ ନାଗରିକ ସୃଷ୍ଟି ହେବେ ସେ ଉଦ୍ଦେଶ୍ୟରେ ପଣ୍ଡିତ ଗୋପବନ୍ଧୁ ସତ୍ୟବାଦୀଠାରେ ଆବାସିକ ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠା କରିସାରିଥିଲେ । ଏ ସବୁ କଥା ଯୁବକ ରାଧାନାଥଙ୍କ କାନରେ ପଡ଼ୁଥାଏ ଓ ତାଙ୍କର ଭାବପ୍ରବଣ ମନ ମଧ୍ୟ ଏ ଦିଗରେ କିଛି କରିବା ପାଇଁ ଜିଲ୍ଲା ବିଦ୍ୟାଳୟର କଠୋର ଶୃଙ୍ଖଳା ଭିତରେ ନିରବରେ ହୁଏତ ଉନ୍ମନା ହୋଇ ଉଠୁଥାଏ ଏବଂ ପରମୁହୂର୍ତ୍ତରେ

ମନର କଥା ମନରେ ପୁଣି ମରିଯାଉଥାଏ । ଏହି ସମୟରେ ପ୍ରଥମେ ପଣ୍ଡିତ ଗୋପବନ୍ଧୁଙ୍କ ସଙ୍ଗେ ରେଭେନ୍ସା କଲେଜମେଣ୍ଟର ଯୁବକ ରାଧାନାଥଙ୍କର ହଠାତ୍ ସାକ୍ଷାତ ହୋଇଗଲା । ଏହି ସାକ୍ଷାତ ଅତ୍ୟନ୍ତ କ୍ଷଣିକ, ତଥାପି ତାହା ସ୍ୱଚ୍ଛ ହୃଦୟ ଯୁବକ ରାଧାନାଥଙ୍କ ମନରେ ଗଭୀର ରେଖାପାତ କରିଥିଲା, ଯାହାର ସ୍ମୃତି ଅଦ୍ୟାବଧି ସେ ଭୁଲିପାରି ନାହାନ୍ତି । ରାଧାନାଥଙ୍କ ଜୀବନର ପରବର୍ତ୍ତୀ ଘଟଣାବଳୀରେ ସେହି କ୍ଷଣିକ ସାକ୍ଷାତ ବାସ୍ତବିକ କେବଳ ତାତ୍ପର୍ଯ୍ୟପୂର୍ଣ୍ଣ ନୁହେଁ ଅବିସ୍ମରଣୀୟ ହୋଇ ରହିଯିବା ଏକାନ୍ତ ଯୁକ୍ତିସଙ୍ଗତ ଓ ସ୍ୱାଭାବିକ । ରାଧାନାଥ ଫରେଷ୍ଟ ଡିପାର୍ଟମେଣ୍ଟରେ ଚାଇବସାଠାରେ ଟାଇପିଷ୍ଟ ଭାବରେ ଚାକିରି କରୁଥିବାର ବହୁ ପୂର୍ବରୁ ବିହାରର ସିଂହଭୂମ ଓ ଅନ୍ୟାନ୍ୟ ଅଞ୍ଚଳରେ ପଣ୍ଡିତ ଗୋପବନ୍ଧୁ ଓ ତାଙ୍କର ଅନ୍ୟାନ୍ୟ ସହକର୍ମୀମାନେ ଓଡ଼ିଆ ଭାଷା ଓ ସଂସ୍କୃତିର ସୁରକ୍ଷା ପାଇଁ ସଙ୍ଗଠିତ ଆନ୍ଦୋଳନ ଆରମ୍ଭ କରି ଦେଇଥିଲେ । ବିହାର ମଧ୍ୟରେ ଥିବା ସେହିସବୁ ଅଞ୍ଚଳ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ଓ ସେଠାରେ ହିନ୍ଦୀ ପରିବର୍ତ୍ତେ ଓଡ଼ିଆ ମାତୃଭାଷା ମାଧ୍ୟମରେ ଶିକ୍ଷା ଦିଆଯିବା ଉଚିତ ବୋଲି ପଣ୍ଡିତ ଗୋପବନ୍ଧୁ ଦାବୀ କରୁଥାନ୍ତି ଓ ତାଙ୍କ ପ୍ରଚେଷ୍ଟାରେ ଓଡ଼ିଆ ମାଧ୍ୟମରେ ଶିକ୍ଷାପ୍ରଦାନ କରିଯିବା ନିମନ୍ତେ କେତେଗୋଟି ଓଡ଼ିଆ ସ୍କୁଲ ମଧ୍ୟ ସ୍ଥାପିତ ହୋଇ ସାରିଥାଏ । ଏହି ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରିକରଣ ତଥା ବିକାଶ ଉଦ୍ଦେଶ୍ୟରେ ଗୋପବନ୍ଧୁ ଚାଇବସାକୁ ଗସ୍ତରେ ଗଲାବେଳେ ତାଙ୍କ ସହିତ ରାଧାନାଥଙ୍କର ପୁଣି ସାକ୍ଷାତ ଘଟେ । ସତେ ଯେପରି ଏହି ସାକ୍ଷାତ ପାଇଁ ରାଧାନାଥ ଦିନ ଗଣୁଥିଲେ ଓ ଏହି ସାକ୍ଷାତ ବିଧିନିର୍ଦ୍ଦିଷ୍ଟ ଥିଲା । ଛାତ୍ର ଜୀବନରେ ଯାହାଙ୍କର କାର୍ଯ୍ୟ ଓ ନେତୃତ୍ୱର କଥା ତାଙ୍କ ଚେତନ ଏବଂ ଅବଚେତନ ମନରେ ଗଭୀର ପ୍ରଭାବ ବିସ୍ତାର କରିଥିଲା, ସେହି ମହାମାନବଙ୍କୁ ସାକ୍ଷାତ କରିବା, ତାଙ୍କ ଆନ୍ଦୋଳନ ସମ୍ପର୍କରେ ଆଲୋଚନା କରିବା ଏବଂ ସମ୍ଭବ ହେଲେ ଯଥାଶକ୍ତି ସାହାଯ୍ୟ ଓ ସହଯୋଗ କରିବାକୁ ରାଧାନାଥ ବିରଳ ସୌଭାଗ୍ୟ ବୋଲି ମନେ କରୁଥିଲେ । ଲୁହା ଚୁମ୍ବକ ଦ୍ୱାରା ଆକୃଷ୍ଟ ହେଲାପରି ଉତ୍କଳମଣି ଗୋପବନ୍ଧୁଙ୍କର ଆକର୍ଷଣୀୟ ନେତୃତ୍ୱ ଓ ଅକପଟ ଦେଶସେବାର ମହନୀୟତା ଦ୍ୱାରା ରାଧାନାଥ ସ୍ୱତଃ ଆକୃଷ୍ଟ ହୋଇ

ପଡ଼ିଲେ । ଉତ୍କଳମଣି ବାସ୍ତବିକ ଦିବ୍ୟଦ୍ରଷ୍ଟା ଥିଲେ । ଶ୍ରୀ ରାମକୃଷ୍ଣ ପରମହଂସ ନରେନ୍ଦ୍ରନାଥ ଦତ୍ତଙ୍କ ମଧ୍ୟରୁ ସ୍ୱାମୀ ବିବେକାନନ୍ଦଙ୍କୁ ଆବିଷ୍କାର କରିଥିଲେ । ଅବିକଳ ସେହିପରି ୧୯୧୨ ମସିହାର କୌଣସି ଏକ ରୌଦ୍ରତପ୍ତ ମଧ୍ୟାହ୍ନରେ ବିଦ୍ୟାଳୟଗାମୀ ଏକ କିଶୋରକୁ ଦେଖି ତାଂ ମଧ୍ୟରେ ବର୍ତ୍ତମାନର ରାଧାନାଥ ରଥଙ୍କର ସମସ୍ତ ସମ୍ଭାବନା ସମ୍ଭବତ ସେ ଦେଖିପାରିଥିଲେ । ଏହି ପ୍ରସଙ୍ଗରେ ଶ୍ରୀ ରାଧାନାଥ ରଥଙ୍କର ଅନୁଭୂତିକୁ ଉଦ୍ଧାର କରିବା ପ୍ରାସଙ୍ଗିକ ହେବ ।

ଶ୍ରୀ ରାଧାନାଥ ରଥ 'ସମାଜ'ର ଗୋପବନ୍ଧୁ ଶ୍ରାଦ୍ଧ ସଂଖ୍ୟାରେ ଲେଖିଛନ୍ତି; "...କିନ୍ତୁ ମୁହୂର୍ତ୍ତିକର ଏ ସାକ୍ଷାତ ମୋ ବାଲ୍ୟ ଜୀବନର ସ୍ମୃତିରେ ଥିବା ଅତି ଗୋଟିଏ ଘଟଣାକୁ ଚେତାଇ ଦେଲା । ୧୯୧୨ ମସିହା କଥା । ସେତେବେଳେ କଲିଜଏଟ୍ ସ୍କୁଲ ବକ୍ସିବଜାର 'ବହ୍ନୀ-ଭଗତ କୋଠା'ରେ ହେଉଥାଏ, ଯେଉଁଠାରେ ବର୍ତ୍ତମାନ ସରକାରୀ ଛାପାଖାନା ପ୍ରତିଷ୍ଠିତ । ମୁଁ ସାହେବଜାଦା ବଜାରର ଗୋଟିଏ ମେସ୍‌ରେ ରହୁଥାଏ । ପ୍ରତିଦିନ ଆଲମଚାନ୍ଦ ବଜାର ଓ ଗଙ୍ଗାମନ୍ଦିର ବାଟ ଦେଇ ବକ୍ସିବଜାର ସ୍କୁଲକୁ ଯାଏ । ଦିନେ ମୁଁ ସେହିପରି ଆଲମଚାନ୍ଦ ବଜାର ରାସ୍ତାରେ ସୁଦାମବାବୁ (ସ୍ୱର୍ଗୀୟ ସୁଦାମଚରଣ ନାୟକ)ଙ୍କ ଘର ବାଟ ଦେଇ ଗଙ୍ଗାମନ୍ଦିର ରାସ୍ତା ଆଡ଼କୁ ଯାଉଥିଲି । ବାଟରେ ଶୁଭ୍ରଧାରୀ ଯାହାଙ୍କୁ ଦେଖିଲି, ତାଙ୍କୁ ଥରେ ସେଠାରେ ଭେଟିଥିଲି । ସେତେବେଳେ ମୋ ବାଟରେ ମୁଁ ଚାଲି ଯାଉଥିଲି । ମୁଁ ଯଦି ବା ତାଙ୍କ ନାଁ ଆଗରୁ ଶୁଣିଥିଲି, ପ୍ରତ୍ୟକ୍ଷ ଚିହ୍ନି ନଥିଲି । ମୁଁ ତାଙ୍କ ପଛେ ପଛେ ଚାଲିଥିଲି । ମୁଁ ଖରାରେ ଚାଲି ଯାଉଥିବା ଦେଖି ସେ ଅତି ସ୍ନେହରେ ମତେ ଡାକି ପଚାରିଲେ, 'କେଉଁ ସ୍କୁଲରେ ପଢ଼ୁଛ ?' ମୁଁ କହିଲି, 'କଲିଜଏଟ୍ ସ୍କୁଲରେ ।' ମତେ ପଚାରିଲେ, 'ଏଡ଼େ ଖରାରେ ଯାଉଛ, ଛତା ଖଣ୍ଡିଏ ଧରୁନ ?' ମୁଁ କହିଲି, 'ମୋର ଛତା ନାହିଁ ।' ସେ ମୋ କାନ୍ଧରେ ହାତ ପକାଇ ଘର କେଉଁଠି, ବସା କେଉଁଠାରେ ଇତ୍ୟାଦି ପଚାରି ମୋର ପରିଚୟ ମାଗିଲେ । ମୋଠାରୁ ଉତ୍ତର ଶୁଣି କହିଲେ; 'ତୁମେ ସତ୍ୟବାଦୀ

ସ୍କୁଲରେ ପଢ଼ିବ ? ସାହାଯ୍ୟ ମିଳିବ ।' ମୁଁ କହିଲି, 'ମୁଁ ତ ଏଠାରେ ବୃତ୍ତି ପାଇ ପଢ଼ୁଛି ।' ସେ କହିଲେ, 'ହଉ । ଅସୁବିଧା ହେଲେ ମୋତେ କହିବ ।' ପଚାରିଲେ, 'ମୋ ନା ଜାଣିଛ ?' ମୁଁ କହିଲି, 'ନା', ସେ କହିଲେ 'ତୁମେ ଗୋପବନ୍ଧୁ ଦାଶ, ସତ୍ୟବାଦୀ ଠିକଣାରେ ଚିଠି ଲେଖିଲେ ମୁଁ ପାଇବି ।'...ବଡ଼ ସୌମ୍ୟ ମୂର୍ତ୍ତି । ସହାସ୍ୟ ବଦନ । ଏପରି ସ୍ନେହ ଓ ଶ୍ରଦ୍ଧାପୂର୍ଣ୍ଣ ଭାବରେ କଥା କହିଲେ ଯେ, ତାଙ୍କର ଚେହେରା ଓ କଥା ମୋ ସ୍ମୃତି ପଟରେ ରହିଗଲା...'

ଗୋପବନ୍ଧୁଙ୍କ ସହିତ କିଶୋର ରାଧାନାଥଙ୍କର ଏହି ଆକସ୍ମିକ ସାକ୍ଷାତର ପ୍ରାୟ ସାତବର୍ଷ ପରେ ଗୁନିଁବସାରେ ରାଧାନଥଙ୍କ ସହିତ ସାମୟିକ ସାକ୍ଷାତର ସମୟରେ ତରୁଣ ରାଧାନାଥଙ୍କର ବୁଦ୍ଧିଦୀପ୍ତ ଆଲୋଚନା, ଦେଶମାତୃକାର ସେବା କରିବା ପାଇଁ ଅଲଙ୍ଘନୀୟ ଆବେଗ ଓ ନିଷ୍ଠା, ଭାଷା, ସଂସ୍କୃତି ଓ ଐତିହ୍ୟ ପ୍ରତି ଗଭୀର ଶ୍ରଦ୍ଧା, ବିଚକ୍ଷଣ କର୍ମକୁଶଳତା, ଓ ଦେଶ ପାଇଁ ନିଜର ସବୁ କିଛି ତ୍ୟାଗ କରିବାର ଅନୁକରଣୀୟ ଦୃଢ଼ ଓ ଆନ୍ତରିକ ସଙ୍କଳ୍ପ ଏବଂ ଉତ୍ସାହ ଉଦ୍ରେକକାରୀ କର୍ତ୍ତବ୍ୟବୋଧ ଲକ୍ଷ୍ୟ କରି ଉତ୍କଳମଣି ଗୋପବନ୍ଧୁ ଅଭିଭୂତ ହୋଇ ପଡ଼ିଥିଲେ । ରାଧାନାଥଙ୍କ ମଧ୍ୟରେ ବର୍ତ୍ତମାନର ଏ ବାର୍ଦ୍ଧକ୍ୟ ସତ୍ତ୍ୱେ ଯେଉଁ ଲୋକପ୍ରିୟତା, କାର୍ଯ୍ୟଦକ୍ଷତା, ପ୍ରତିଷ୍ଠା, ନେତୃତ୍ୱ, ପ୍ରତିଭାର ସ୍ଫୁରଣ, ଶାଣିତ ବୁଦ୍ଧି, ତ୍ୟାଗପୂତ ମାନବିକତା, ଜାତୀୟ ସ୍ୱାଭିମାନ ଏବଂ ସଂସ୍କୃତି ଅନୁରକ୍ତିର ଉଜ୍ଜ୍ୱଳ ଦୃଷ୍ଟାନ୍ତ ଦେଖି ଆମେ ଏବେ ବି ମୁଗ୍ଧ ହୋଇ ପଡ଼ୁଛୁ ଆଜକୁ ପ୍ରାୟ ଷାଠିଏ ବର୍ଷ ତଳେ ଗୁନିଁବସାରେ ଜଙ୍ଗଲ ଝରଣାର ଜଣେ ଅଧସ୍ତନ ଟାଇପିଷ୍ଟ କର୍ମଚାରୀଙ୍କ ମଧ୍ୟରେ ସେ ସବୁର ସମସ୍ତ ସମ୍ଭାବନାର ଉଜ୍ଜ୍ୱଳ ଚିହ୍ନ ଉତ୍କଳମଣି ଗୋପବନ୍ଧୁଙ୍କ ପରି ମନୀଷୀ ଓ ଚରିତ୍ର ଗ୍ରାହକ, ଦୂରଦ୍ରଷ୍ଟା ଭାବରେ ଅଭ୍ରାନ୍ତ ଦୃଷ୍ଟିରେ ଦେଖି ପାରିଥିଲେ । ଏହା ଭାବିଲେ ଆମର ଶରୀର ଆଜି ବି ଅପୂର୍ବ ବିସ୍ମୟ...ପୁଲକରେ ଶିହରି ଉଠେ । ମହାମାନବଙ୍କ ଦୃଷ୍ଟି ଯେ ସାଧାରଣମାନବଙ୍କ ଦୃଷ୍ଟିଠାରୁ ସମ୍ପୂର୍ଣ୍ଣ ଭିନ୍ନ, ଏହା ଗୋପବନ୍ଧୁଙ୍କର ରାଧାନାଥଙ୍କୁ ନିର୍ବାଚନରୁ ପ୍ରମାଣିତ ହୋଇଅଛି ।

ଗୋପବନ୍ଧୁଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ ପ୍ରତି ଯୁବକ ରାଧାନାଥ ବାସ୍ତବରେ ନିଜର

ଅଜ୍ଞାତ ସାରରେ ଧୀରେ ଧୀରେ ଆକୃଷ୍ଟ ହୋଇ ପଡ଼ୁଥିଲେ । ସତ୍ୟ-ବାଦୀରେ ଆରମ୍ଭ କରିଥିବା ଜାତୀୟ କାର୍ଯ୍ୟରେ ରାଧାନାଥଙ୍କର ସହଯୋଗ ଗୋପବନ୍ଧୁ କାମନା କରିବା ମାତ୍ରେ ରାଧାନାଥ ନିଜର ଚାକିରିରୁ ଇସ୍ତଫା ଦେଇ ଗୋପବନ୍ଧୁଙ୍କ ସାଧନା ପୀଠ ସତ୍ୟବାଦୀକୁ ଚାଲି ଆସିଲେ । ନିଜର ପରିବାରରେ ଅର୍ଥ ଉପାର୍ଜନର ଯେତେବେଳେ ସବୁଠାରୁ ବେଶି ପ୍ରୟୋଜନ, ଠିକ ସେହି ସମୟରେ ନିଜ ଜୀବନର ଏକମାତ୍ର ସମ୍ବଳ ସେହି ସରକାରୀ ଚାକିରିକୁ ଜଳାଞ୍ଜଳି ଦେଇ ଦେଶସେବା ନାମରେ ଏକ ନିଶ୍ଚିତ ଅନିଶ୍ଚିତତା ମଧ୍ୟକୁ ଯୁବକ ରାଧାନାଥ ଏକପ୍ରକାର ଲମ୍ଫ ପ୍ରଦାନ କରିଥିଲେ । ଏହାକୁ କେବଳ ତ୍ୟାଗ କହିଲେ ଯଥେଷ୍ଟ ହେବନାହିଁ, ଏହା ଥିଲା ବାସ୍ତବିକ ସେକାଳର ପରିପ୍ରେକ୍ଷିତରେ ଚରମ ଦୁଃସାହସିକତା । ସେକାଳର ସେହି ଚରମ ଦୁଃସାହସିକତା ରୂପକ ଅଗ୍ନି ପରୀକ୍ଷା ମଧ୍ୟରୁ ଦୂରଦ୍ରଷ୍ଟା ତ୍ୟାଗୀ ରାଧାନାଥ ଶୁଦ୍ଧ ସୁବର୍ଣ୍ଣ ପରି ଦେଦୀପ୍ୟମାନ ଔଜ୍ଜଲ୍ୟରେ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ରାଧାନାଥ ଚାକିରି ଛାଡ଼ି ସତ୍ୟବାଦୀରେ ଆସି ପହଞ୍ଚିବାର ମାତ୍ର ଚାରିଦିନ ପରେ ଅର୍ଥାତ୍ ୧୯୧୯ ଅକ୍ଟୋବର ୪ ତାରିଖ ବିଜୟା ଦଶମୀ ଦିନ ଗୋପବନ୍ଧୁଙ୍କ ନିର୍ଦ୍ଦେଶ କ୍ରମେ ରାଧାନାଥଙ୍କ ପରି-ଚାଳନାରେ 'ସମାଜ' ନାମରେ ଏକ ସାପ୍ତାହିକ ସମ୍ବାଦ ପତ୍ରିକାର ଶୁଭାରମ୍ଭ ହେଲା । ରାଧାନାଥ ଯେ 'ସମାଜ'ରେ ଯୋଗ ଦେଲେ, ଆଜି ପର୍ଯ୍ୟନ୍ତ ସେ ନିରବଚ୍ଛିନ୍ନ ଭାବରେ ସେହି 'ସମାଜ' ସହିତ ସମ୍ପୃକ୍ତ ରହି ଅଛନ୍ତି । ଯେ କୌଣସି ସରକାରୀ କର୍ମଚାରୀଙ୍କ ଭାଗ୍ୟରେ ସ୍ୱାଭାବିକ ରୀତିରେ ଯାହା ଘଟିଥାଏ, ରାଧାନାଥଙ୍କ ଜୀବନରେ ତାହାହିଁ ନିଶ୍ଚିତ ଭାବରେ ଘଟିଥାନ୍ତା ଏବଂ ସରକାରୀ କର୍ମଚାରୀ ଭାବରେ ରାଧାନାଥଙ୍କର କର୍ମମୟ ଜୀବନ ଓ ସମସ୍ତ ସମ୍ଭାବନାର ଇତିହାସ ଜଟିଳ ନିୟମର ଗୋଲ୍ଲ ଗୋଲ୍ଲ ଫାଇଲ ଅରଣ୍ୟ ମଧ୍ୟରେ ନଷ୍ଟଦଂଷ୍ଟ୍ର ହୋଇ ଲୋକଲୋଚନର ଅଗୋଚରରେ ରହି ଯାଇଥାନ୍ତା; କିନ୍ତୁ ସରକାରୀ ଜୀବନର ସେହି ନିଶ୍ଚିତ ଅପମୃତ୍ୟୁରୁ ରାଧାନାଥଙ୍କୁ ରକ୍ଷା କରି ଓ ତାଙ୍କୁ ନୂତନ ଦୀକ୍ଷାରେ ଦୀକ୍ଷିତ କରି ନିଜର ଅନ୍ତର୍ନିହିତ ପ୍ରତିଭାକୁ ସ୍ୱଚ୍ଛନ୍ଦରେ ବିକଶିତ କରିବା ପାଇଁ ଯେଉଁ ଅପୂର୍ବ ସୁଯୋଗ, ଅନୁକୂଳ ପରିବେଶ ଓ ସେ ଦିଗରେ ଯଶସ୍ୱୀ ହେବା ନିମନ୍ତେ

ଅନନ୍ତ ଆଶୀର୍ବାଦ ରାଧାନାଥଙ୍କୁ ଯେ ଦେଇଦେଲେ, ସେ ହେଉଛନ୍ତି ଭବିଷ୍ୟଦ୍ରଷ୍ଟା ଯୁଗ ପୁରୁଷ ଉତ୍କଳମଣି ଗୋପବନ୍ଧୁ । ରାଧାନାଥ ରଥ ହେଉଛନ୍ତି ଉତ୍କଳମଣି ଗୋପବନ୍ଧୁଙ୍କର ଅପୂର୍ବ ଆବିଷ୍କାର । ସେଥିପାଇଁ ଜଣେ ସମର୍ଥ ଅନୁଗାମୀ ଭାବରେ ଗୋପବନ୍ଧୁଙ୍କର ଅସମାପ୍ତ କାର୍ଯ୍ୟର ମୁଖପତ୍ର 'ସମାଜ'ରେ ପରମ ନିଷ୍ଠାର ସହିତ ନିରବଚ୍ଛିନ୍ନ ଭାବରେ କାର୍ଯ୍ୟ କରି ରାଧାନାଥ ତାଙ୍କର ଅନ୍ତରର ଗଭୀର ଅକପଟ କୃତଜ୍ଞତା ସେହି ମହାମାନବଙ୍କ ଉଦ୍ଦେଶ୍ୟରେ ସତତ ଜ୍ଞାପନ କରିଅଛନ୍ତି ।

୧୯୧୯ ଅକ୍ଟୋବର ୪ ତାରିଖ ଦିନ ଉତ୍କଳମଣିଙ୍କ ସମ୍ପାଦନା ଓ ରାଧାନାଥଙ୍କ ପରିଚାଳନାରେ ଯେଉଁ 'ସମାଜ' ପ୍ରଥମେ ଆତ୍ମପ୍ରକାଶ କଲା, ତାହା ଥିଲା ସାପ୍ତାହିକ ଓ କ୍ରାଉନ ଆକାରର କ୍ଷୁଦ୍ର କଳେବର ବିଶିଷ୍ଟ ସମ୍ବାଦପତ୍ର । ଏହି 'ସମାଜ' ପ୍ରକାଶ ପାଇବା ପୂର୍ବରୁ ଗୋପବନ୍ଧୁ 'ସତ୍ୟବାଦୀ' ନାମରେ ଏକ ମାସିକ ସାହିତ୍ୟ ପତ୍ରିକା ପ୍ରକାଶ କରୁଥିଲେ । ସତ୍ୟବାଦୀରେ ରାଧାନାଥ ଯୋଗଦେବା ପରେ ସେହି ୧୯୧୯ ମସିହାରେ ଗୋପବନ୍ଧୁ ସତ୍ୟବାଦୀଠାରେ କ୍ଷୁଦ୍ର ଛାପାଖାନାଟିଏ ବସାଇଲେ ଏବଂ ତା'ର ନାମ ଦେଲେ । 'ସତ୍ୟବାଦୀ ପ୍ରେସ' ରାଧାନାଥଙ୍କ ଉପରେ ଏହି ଉଭୟ ପ୍ରେସ୍ ଓ ପତ୍ରିକା ଦପ୍ତର ପ୍ରକାଶନ ଓ ପରିଚାଳନା ଦାୟିତ୍ୱ ନ୍ୟସ୍ତ ହୋଇଥିଲା । 'ସମାଜ' ପ୍ରକାଶ ପାଇବାର ମାତ୍ର 'ନଅ' ବର୍ଷ ପରେ ଉତ୍କଳମଣିଙ୍କର ଦେହାନ୍ତ ହୋଇଗଲା । ସେତେବେଳକୁ 'ସମାଜ' ମଧ୍ୟ ଦୈନିକ ହୋଇ ନାହିଁ ଏବଂ ଅତ୍ୟନ୍ତ ପ୍ରତିକୂଳ ପରିସ୍ଥିତି ମଧ୍ୟରେ 'ସମାଜ' ପ୍ରକାଶ ପାଉଥାଏ । ରାଧାନାଥଙ୍କର ଦୃଢ଼ ମନୋବଳ ହିଁ 'ସମାଜ'ର ଭବିଷ୍ୟତ ଯେ ଉଜ୍ଜ୍ୱଳ ସେ ସମ୍ପର୍କରେ ତାଙ୍କର ଅର୍ଜିତ ବିଶ୍ୱାସ 'ସମାଜ'କୁ ଉପର ଦୈନିକ ସମ୍ବାଦପତ୍ରରେ ପରିଣତ କରିବା ସଙ୍ଗେ ସଙ୍ଗେ ଅପୂର୍ବ ପ୍ରତିଷ୍ଠା ଓ ଲୋକପ୍ରିୟତା ଦେଇଅଛି । ଏହା ଜାଣିଲେ, ରାଧାନାଥଙ୍କର ନିଷ୍ଠା ଓ ଆତ୍ମବିଶ୍ୱାସ ଏବଂ ପରିଚାଳନା ଦକ୍ଷତାର ପ୍ରଶଂସା ନ କରି ରହି ହେବ ନାହିଁ ।

ଏହି ପ୍ରସଙ୍ଗରେ ରାଧାନାଥଙ୍କ ଭାଷାରେ ପ୍ରଦତ୍ତ କିଛି ତଥ୍ୟ ଉଲ୍ଲେଖ କରିବା ପ୍ରାସଙ୍ଗିକ ହେବ ।

"ଗୋପବନ୍ଧୁ ଦାସଙ୍କ ଅନୁରୋଧ କ୍ରମେ ୧୯୧୯ ମସିହା ଅକ୍ଟୋବର ମାସରେ ମୁଁ ସାକ୍ଷୀଗୋପାଳରେ ପହଞ୍ଚିଲି ଏବଂ ସେତେବେଳେ ସାପ୍ତାହିକ 'ସମାଜ'ର ପରିଚାଳନା ଦାୟିତ୍ୱ ମୁଁ ମୁଣ୍ଡାଇଲି । ସେହିଦିନଠାରୁ ମୁଁ ତାହା ସହିତ ରହିଛି ।...ମହାତ୍ମା ଗାନ୍ଧିଙ୍କ ଦାଣ୍ଡି ଅଭିଯାନ ବେଳେ ଆମେ ଗୋଟିଏ ଦୈନିକ ସମାଚାର ପତ୍ର କାଢ଼ୁଥିଲୁ । ମୁଁ କହିଲି ଆମେ ଏହାକୁ ଓ 'ସମାଜ'କୁ ଦୈନିକ କରିଦେବା । ସେହି ଦିନଠାରୁ ସମାଜ ଦୈନିକ ସମ୍ବାଦପତ୍ର ରୂପେ ଚାଲି ଆସୁଛି । ହିମୁ ନାମରେ ଜଣେ [illegible] ଛପାଇବା କାମରେ ଥାଆନ୍ତି । ସେ ମୋତେ ଖବର ଦେଲେ ଗୋଟିଏ ଭଲ ଛପାକଳ ନିଲାମ ଉଠିବ ହେଉଛି—ଗୋଟିଏ ଟ୍ରେଡଲ ମେସିନ୍ । ୧୯୨୮ରେ ଗୋପବନ୍ଧୁଙ୍କ ମୃତ୍ୟୁର ତିନିମାସ ଅବ୍ୟବହିତ ପୂର୍ବରୁ ପରିସ୍ଥିତି ଏପରି ଉପୁଜିଲା ଯେ ସେ ଖବରକାଗଜ ଛପା ବନ୍ଦ କରିବାକୁ ଚାହିଁଲେ, ବନ୍ଦ ନ କରିବା ପାଇଁ ମୁଁ ତାଙ୍କୁ ବୁଝାଇଲି । ଆମେ ହ୍ୟାଣ୍ଡନୋଟ କରି ତିନିହଜାର ଟଙ୍କା ଋଣ କଲୁ । ତିନିହଜାର ପାଞ୍ଚଶହ ଟଙ୍କାରେ ହ୍ୟାଣ୍ଡ ମେସିନଟିଏ କିଣି ଦୈନିକ କାଗଜ ଆରମ୍ଭ କଲୁ । ଲୋକ ସେବକ ମଣ୍ଡଳକୁ ଏ କଥା ଜଣାଇବାରେ, ମୁଁ ମୋ କ୍ଷମତା ବହିର୍ଭୂତ କାର୍ଯ୍ୟ କରିଛି ବୋଲି ସେମାନେ କହିଲେ ଏବଂ କୈଫିୟତ ଦେବାକୁ ମଧ୍ୟ ମୋତେ ଜଣାଇଲେ । କ୍ଷତି ହେଲେ ମୁଁ ସହିବି ଓ ମେସିନ୍‌ଟିକୁ ସାଢ଼େ ତିନିହଜାର ଟଙ୍କାରେ କିଣିନେବି ବୋଲି ଜଣାଇଲି । ଧୀରେ ଧୀରେ ବର୍ଷ ବର୍ଷ ଧରି ବଢ଼ି ବଢ଼ି ଅନୁଷ୍ଠାନଟି ଏ ଅବସ୍ଥାକୁ ଆସିଛି ।"

ପୁନଶ୍ଚ...'ସମାଜ'ର ସମ୍ପାଦକୀୟରେ ଉଲ୍ଲେଖ କରାଯାଇଅଛି—

"୧୯୧୯ ଅକ୍ଟୋବର ୪ ତାରିଖ ବିଜୟା ଦଶମୀ ଦିନ ଡବଲ୍ କ୍ରାଉନ୍ ଆକାରର ଗୋଟିଏ ଛୋଟିଆ 'ସମାଜ' ସାପ୍ତାହିକ ରୂପେ ସତ୍ୟବାଦୀରୁ ପ୍ରକାଶ ପାଇଲା । ସେହି ଦିନଠାରୁ ବର୍ତ୍ତମାନର ସମ୍ପାଦକ ତଥା ଅନେକ କର୍ମୀ ଏ ସଂସ୍ଥା ସହିତ ଏ ପର୍ଯ୍ୟନ୍ତ ସମ୍ପୃକ୍ତ ରହି ଆସିଅଛନ୍ତି । ସେତେବେଳେ ୧୨ ଶହ ଟଙ୍କାର ଯେଉଁ ଛାପାଖାନାଟି ସତ୍ୟବାଦୀରେ ପ୍ରତିଷ୍ଠିତ ହୋଇଥିଲା । ଈଶ୍ୱରଙ୍କ କୃପାରୁ ଏହି ୫୨ ବର୍ଷ ଭିତରରେ ସେହି ଛାପାଖାନା

ଁ ୧୯୩୦ରେ ଗାନ୍ଧିଜୀଙ୍କ ଲବଣ ସତ୍ୟାଗ୍ରହ ଦାଣ୍ଡିଯାତ୍ରା ଦିନ ଦୈନିକରେ ଧାରଣତ ହୋଇଥିବା 'ସମାଜ' ଓ 'ସତ୍ୟବାଦୀ ପ୍ରେସ'ର ଘରବାଡ଼ି ଆଦି ..ପତ୍ତିର ମୂଲ୍ୟ ବର୍ତ୍ତମାନ ୫୨ ଲକ୍ଷ ଟଙ୍କା ହୋଇପାରନ୍ତି।......୧୯୩୦ ଧରଠାରୁ ଇଂରାଜୀ ଓ ଓଡ଼ିଆ ପ୍ରାୟ ସବୁ ସମ୍ବାଦପତ୍ର, ବାର୍ଷିକ ବିବରଣୀ ..ସ୍ତକ, ରିପୋର୍ଟ, ଏପରି କି ବହୁ ଦୁଷ୍ପ୍ରାପ୍ୟ ପୁସ୍ତକ ଓ ରିପୋର୍ଟ ..ାରାବାହିକ ଭାବରେ ଗୋଟିଏ ଲାଇବ୍ରେରୀରେ ସଂରକ୍ଷିତ କରି ରଖା-ଯାଇଛି। ସମ୍ବାଦପତ୍ର ଓ ବିଭିନ୍ନ ପତ୍ରପତ୍ରିକା, ଆଲୋଚନା ପତ୍ର ଓ ..ଯୋଗାଜନ ଛଡ଼ା ବର୍ଷକୁ ହାରାହାରି ୫ ହଜାର ଟଙ୍କାର ପୁସ୍ତକ କିଣାଯାଏ।

('ସମାଜ' ସମ୍ପାଦକୀୟ ୯-୧୦-୬୧)।"

"ସମାଜ ଉତ୍କଳମଣୀଙ୍କର ସୃଷ୍ଟି କିନ୍ତୁ ଅତ୍ୟନ୍ତ ପ୍ରତିକୂଳ ପରିସ୍ଥିତି ..ଧରେ, ସମାଜ ରୁଦ୍ଧଶ୍ୱାସ ହେଉଥିବା ବେଳେ ରାଧାନାଥ ସେମିତି ବାପ ..ରଉଣ୍ଡି ପୁଅ 'ସମାଜ'କୁ ଯେପରି ଦକ୍ଷତାର ସହିତ ଯେଉଁଠିରୁ ଯେଉଁଠିକି ..ରି ପାରିଛନ୍ତି ଏହା ତାଙ୍କର ପରିଚାଳନାଗତ ଦକ୍ଷତାର ସୁନ୍ଦର ପରିଚୟ। ..ସମାଜ' କହିଲେ ରାଧାନାଥ ରଥଙ୍କୁ ବୁଝାଏ ଓ ରାଧାନାଥ ରଥ କହିଲେ ..ସମାଜ' କଥା ଶ୍ରୋତାର ମନକୁ ଆପଣାଛାଏଁ ଚାଲିଆସେ। 'ସମାଜ' ଓ ..ାଧାନାଥ ଉଭୟ ଅବିଚ୍ଛେଦ୍ୟ ସୂତ୍ରରେ ଗ୍ରଥିତ। 'ସମାଜ' ପାଇଁ ରାଧାନାଥ-..ର ତ୍ୟାଗ ଓ କାର୍ଯ୍ୟର ସତେଯେପରି ଶେଷ ନାହିଁ। 'ସମାଜ' ପାଇଁ ..ାଧାନାଥ ଆଜି ଏତେ ପ୍ରତିଷ୍ଠା ଓ ପ୍ରଶଂସାର ଅଧିକାରୀ ହୋଇ ଅଛନ୍ତି କି? ..ି 'ସମାଜ' ସହିତ ସଂପୃକ୍ତ ହୋଇ ନଥିଲେ ତାଙ୍କର ଜୀବନ କି ..କାରରେ ପରିଚାଳିତ ହୋଇଥାଆନ୍ତା ତାହା ଆଲୋଚନା ଓ କଳ୍ପନା ..ାପେକ୍ଷ ହୋଇପାରେ କିନ୍ତୁ, ରାଧାନାଥ ସମାଜର ପରିଚାଳକ ହୋଇ ନ ..ଥିଲେ 'ସମାଜ' ହୁଏତ ପ୍ରକାଶ ଲାଭକରି ନ ଥାନ୍ତା ଓ ଅନ୍ୟାନ୍ୟ ପତ୍ର-ପତ୍ରିକା ପରି 'ସମାଜ'କୁ ଅକାଳ ମୃତ୍ୟୁ ବରଣ କରିବାକୁ ପଡ଼ିଥାନ୍ତା ଏଥିରେ ସନ୍ଦେହ ନାହିଁ, ଏହିଠାରେ ହିଁ ରାଧାନାଥଙ୍କର ବ୍ୟକ୍ତିଗତ ପ୍ରତିଭା କର୍ମକୁଶଳତା ଓ ସମୟୋପଯୋଗୀ କର୍ତ୍ତବ୍ୟ ସମ୍ପାଦନା କରିବାର

ବିଚକ୍ଷଣତାର ପ୍ରକୃତ ପରିଚୟ ମିଳିଥାଏ । 'ସମାଜ' ରାଧାନାଥଙ୍କର କେବଳ କର୍ମ ସାଧନାର ପ୍ରତୀକ ନୁହେଁ, ତାହା ତାଙ୍କ ଜୀବନର ଏକ ଅଂଶ ।

ରାଧାନାଥ ଉଚ୍ଚଶିକ୍ଷା ଲାଭରୁ ବଞ୍ଚିତ ହୋଇଥିଲେ ମଧ୍ୟ ଜ୍ଞାନ ଆହରଣ କରିବାର ନିରବଚ୍ଛିନ୍ନ ପ୍ରଚେଷ୍ଟାରୁ ନିଜକୁ କେବେ ବଞ୍ଚିତ କରି ରଖି ନାହାଁନ୍ତି । ଉତ୍କଳମଣି ଗୋପବନ୍ଧୁଙ୍କ ଜୀବନାଦର୍ଶରେ ନିଜ ଜୀବନକୁ ରାଧାନାଥ ଗଢ଼ିଥିବାରୁ ତାଙ୍କ ଜୀବନରେ ଗୋପବନ୍ଧୁଙ୍କର ପ୍ରଭାବ ସୁପରିଲକ୍ଷିତ । ଓଡ଼ିଆ ଭାଷା ଓ ସାହିତ୍ୟର ଉନ୍ନତି ସାଧନ କରିବା ଗୋପବନ୍ଧୁଙ୍କ ଜୀବନର ଅନ୍ୟତମ ଆଦର୍ଶ ଥିଲା । ଏହି ଆଦର୍ଶର ବଶବର୍ତ୍ତୀ ହୋଇ ସ୍ୱୟଂ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କ ଠାରୁ ଆରମ୍ଭ କରି ପଣ୍ଡିତ ନୀଳକଣ୍ଠଙ୍କ ପର୍ଯ୍ୟନ୍ତ ପ୍ରତ୍ୟେକ କିଛି ନା କିଛି ରଚନା କରିଥିଲେ । ଉତ୍କଳମଣି ଗୋପବନ୍ଧୁଙ୍କର 'କାରା-କବିତା' ଓ 'ଧର୍ମପଦ' ପଣ୍ଡିତ କୃପାସିନ୍ଧୁଙ୍କର 'ବାରବାଟି' 'କୋଣାର୍କ' ଓ 'ଓଡ଼ିଶାର ଇତିହାସ' ପଣ୍ଡିତ ନୀଳକଣ୍ଠଙ୍କର କୋଣାର୍କେ, ଖାରବେଳ, ଆର୍ଯ୍ୟଜୀବନ, ପଣ୍ଡିତ ଗୋଦାବରୀଶଙ୍କର ପୁରୁଷୋତ୍ତମଦେବ ଓ କାଳଜୟୀ ଗ୍ରନ୍ଥ ପୁସ୍ତକ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବା ସଙ୍ଗେ ସଙ୍ଗେ ଜନସାଧାରଣଙ୍କ ମଧ୍ୟରେ ଜାତୀୟ ଭାବଧାରା ଉଦ୍ରେକ କରିବାରେ ବିଶେଷ ସହାୟକ ହୋଇଅଛି । ରାଧାନାଥ ସେହି ଜାତୀୟଭାବ ଉଦ୍ରେକକାରୀ ସାରସ୍ୱତ ପରମ୍ପରାର ଜଣେକ ସୁଯୋଗ୍ୟ ଅନୁଗାମୀ ହୋଇଥିବାରୁ ସେପରି କୌଣସି ପୁସ୍ତକ ରଚନା କରି ନ ଥିଲେ ମଧ୍ୟ 'ସମାଜ'ର ସମ୍ପାଦକୀୟ ସ୍ତମ୍ଭରେ ସାମ୍ପ୍ରତିକ ଘଟଣାବଳୀଠାରୁ ଆରମ୍ଭ କରି ସାହିତ୍ୟ, ସଂସ୍କୃତି, ବିଜ୍ଞାନ, ବାଣିଜ୍ୟ, ଅର୍ଥନୀତି, ସମାଜନୀତି ଆଦି ବିଭିନ୍ନ ବିଷୟରେ ସରଳ, ସହଜ ବୋଧଗମ୍ୟ ଭାଷାରେ ସୁନ୍ଦର ସୁଚିନ୍ତିତ ଯୁକ୍ତିମୂଳକ ପ୍ରତିଭାଦୀପ୍ତ ଆଦର୍ଶ ପ୍ରବନ୍ଧମାନ ରଚନା କରି ଆସୁଅଛନ୍ତି । ସେ ସବୁକୁ ଏକତ୍ର ସଙ୍କଳନ କଲେ ତାହା ଯେ କେବଳ ଓଡ଼ିଆ ସାହିତ୍ୟର ମୁଖ ଉଜ୍ଜ୍ୱଳ କରିବ ତାହା ନୁହେଁ । ସମଗ୍ର ପ୍ରବନ୍ଧ ସାହିତ୍ୟ ଜଗତରେ ଉଚ୍ଚକୋଟୀର ଚିନ୍ତା ଉଦ୍ରେକକାରୀ ପ୍ରବନ୍ଧ

ସିବରେ ପ୍ରଶଂସିତ ହେବ, ଏହା ନିଃସନ୍ଦେହରେ କୁହାଯାଇପାରେ । ରାଧାନାଥଙ୍କର ସମ୍ପାଦକୀୟ ରଚନାର ଆଉ ଗୋଟିଏ ଉଲ୍ଲେଖଯୋଗ୍ୟ ବୈଶିଷ୍ଟ୍ୟ ହେଲା ତଥ୍ୟ ବହୁଳତା । ତାଙ୍କର ପ୍ରତ୍ୟକ୍ଷ ଭାଷଣ ପରି ତାଙ୍କ ଲେଖା ମଧ୍ୟରେ ବହୁ ସୂକ୍ଷ୍ମ କଥାରେ ଉଦ୍ଧୃତ ଓ ତଥ୍ୟ ପରିଦୃଷ୍ଟ ହୋଇଥାଏ ।

ଯେ କୌଣସି ଏକ ବିଷୟ ଉପରେ ଲେଖିଲାବେଳେ ସେ ସମ୍ପର୍କରେ ସର୍ବପ୍ରକାର ତଥ୍ୟପ୍ରଦାନ କରିବାକୁ ଉଚିତ ମନେ କରି ଆସିଅଛନ୍ତି । ବାତ୍ୟା ବା ବନ୍ୟା ପ୍ରସଙ୍ଗରେ ସେ ସମ୍ପାଦକୀୟ ଲେଖିଲାବେଳେ କେଉଁ ସମୟରେ କେଉଁ ନଦୀରେ କେତେ ଫୁଟ ପାଣି ହୋଇଥିଲା, କେତେଗୋଟି ଘାଇ ହୋଇଥିଲା ବ୍ରିଟିସ୍ ସରକାରଙ୍କର ବିଭିନ୍ନ କର୍ମଚାରୀଙ୍କଠାରୁ ଆରମ୍ଭ କରି ସ୍ୱାଧୀନ ଭାରତର ମନ୍ତ୍ରୀ, ଇଞ୍ଜିନିୟରଙ୍କ ପର୍ଯ୍ୟନ୍ତ ସେ ସବୁର ପ୍ରତିକାର ପାଇଁ କିଏ କେତେବେଳେ କଣ ପରାମର୍ଶ ଦେଇଥିଲେ, ସ୍ଥାୟୀ ନିରାକରଣ ପାଇଁ କଣ କରିବା ଆବଶ୍ୟକ ଓ କେତେ ଟଙ୍କା ସେଥିପାଇଁ ଲୋଡ଼ା, ପଞ୍ଚବାର୍ଷିକ ଯୋଜନାରେ ସେ ବିଷୟରେ କୌଣସି ବ୍ୟବସ୍ଥା ହୋଇଅଛି କି ନାହିଁ ଏବଂ ଏ କ୍ଷେତ୍ରରେ ବିଶ୍ୱ ବ୍ୟାଙ୍କଙ୍କର ଭୂମିକା କଣ ଆଦି ଆନୁଷଙ୍ଗିକ ସବୁ ପ୍ରାସଙ୍ଗିକ ତଥ୍ୟ ସେ ସେହି ସମ୍ପାଦକୀୟ ମଧ୍ୟରେ ପ୍ରଦାନ କରି ରଚନାଟିକୁ ଯୁକ୍ତିଯୁକ୍ତ ଓ ସ୍ୱୟଂ ସମ୍ପୂର୍ଣ୍ଣ ପ୍ରବନ୍ଧର ମର୍ଯ୍ୟାଦା ପ୍ରଦାନ କରିଥାଆନ୍ତି । ବିଭିନ୍ନ ଉଦ୍ଧୃତି ଓ ପରିସଂଖ୍ୟାନ ଏବଂ ତଥ୍ୟ ବହୁଳତାର ଫଳରେ ରଚନା ବହୁ ବିସ୍ତୃତ ହୋଇଥାଏ । ସେ ବିଭିନ୍ନ କାର୍ଯ୍ୟରେ ବ୍ୟସ୍ତ ରହୁଥିଲେ ମଧ୍ୟ ଏତେ କଥା ପଢ଼ିବାକୁ, ଏତେ ତଥ୍ୟ ସଂଗ୍ରହ କରିବାକୁ, ଏତେ କଥା ମନେ ରଖିବାକୁ ଏବଂ ଏତେ କଥା ଲେଖିବାକୁ ପ୍ରତିଦିନ ଏତେ ସମୟ କପରି ପାଆନ୍ତି ତାହା କଳ୍ପନା କଲେ ବିସ୍ମିତ ହେବାକୁ ପଡ଼େ । ତାଙ୍କର ରଚନା ଓ ସୁଦୀର୍ଘ ଭାଷଣ ମଧ୍ୟରେ ଅପୂର୍ବ ଜ୍ଞାନ, ସ୍ମୃତି ଶକ୍ତି, ବିଚାର ଓ ବିଶ୍ଳେଷଣ ଭଙ୍ଗୀ ଏବଂ ତାର୍କିକ ସୁଲଭ ମନବୃତ୍ତିର ସୁନ୍ଦର ସମନ୍ୱୟ ଘଟିଥାଏ ।

ଏହି ପ୍ରବନ୍ଧ ମାଧ୍ୟମରେ ମୁଁ ରାଧାନାଥଙ୍କର ଯେଉଁ ଚିତ୍ର ଦେବାକୁ ପ୍ରୟାସ କରୁଛି ତାହା ଅପରାହ୍ଣର ରାଧାନାଥ । ତାଙ୍କୁ କୈଶୋର, ଯୌବନ ଅଥବା ପ୍ରୌଢ଼ାବସ୍ଥାରେ ଦେଖିବାର ସୁଯୋଗ ମୁଁ ପାଇନାହିଁ କିମ୍ବା ପାଇବା ସମ୍ଭବ ନ ଥିଲା । ତା ନହେଲେ ତାଙ୍କ ସହିତ ମୁଁ ମିଶି ନଥିବାରୁ ମୋର ପରୋକ୍ଷ ଜ୍ଞାନ ଉପରେ ଭିତ୍ତିକରି ଏହି ପରିଚୟ ଲେଖି ବସିଛି ; କିନ୍ତୁ ଜୀବନର ଏହି ଅପରାହ୍ଣରେ ତାଙ୍କୁ ଏପରି କର୍ମତତ୍ପର, ସମୟାନୁବର୍ତ୍ତୀ, ଦେଶ ଓ ଦଶର ସେବାରେ ସତତଃ ବ୍ରତୀ, ପରଦୁଃଖ କାତର, ସଂସ୍କୃତି ପ୍ରେମୀ, ବିଦ୍ୟୋତ୍ସାହୀ, ଗୁଣଗ୍ରାହୀ ଓ ଚରିତ୍ରର ନିଷ୍କଳଙ୍କ ଦେଖିଲାବେଳେ, ତାଙ୍କର କିଶୋର ଓ ଯୌବନାବସ୍ଥାରେ ସେ ଏ ଦିଗରେ କିପରି ସତତଃ ଯତ୍ନବାନ ଥିବେ ତାହା ସହଜରେ ଅନୁମାନ କରିହୁଏ । ଆଜିର ରାଧାନାଥ ଗୋଟିଏ ଦିନର ଆକସ୍ମିକ ସୃଷ୍ଟି ନୁହଁନ୍ତି । ତାଙ୍କର ଏହି ପ୍ରତିଷ୍ଠା ପାଇଁ ତାଙ୍କୁ ଯେ ଅତୀତରେ କେତେ ଅଧ୍ୟବସାୟ, ତ୍ୟାଗ ବରଣ କରିବାକୁ ପଡ଼ିଥିବ ତାହାର ହୁଏତ ଇୟତ୍ତା ନାହିଁ । ଅତୀତର ସମସ୍ତ ସମୟ ଓ ବିରଳ ସୁଯୋଗ ସେ ଅପଚୟ କରି ନଥିବାରୁ ଆଜି ବହୁଜନ ଆଦୃତ ହୋଇ ପାରିଅଛନ୍ତି । ସେଥିପାଇଁ ଏହି ବହୁ ଅଭିଜ୍ଞ ବୟସ୍କ ଏହି ଅପରାହ୍ଣରେ ମଧ୍ୟ ଶାଣିତ ଖଡ୍ଗ ପରି ସ୍ପଷ୍ଟ ଓ ସମୁଜ୍ଜ୍ୱଳ ।

ରାଧାନାଥ ରାଜନୀତିରେ ଭାଗନେଇ ୧୯୫୨ ରୁ ୧୯୬୧ ପର୍ଯ୍ୟନ୍ତ ଓଡ଼ିଶାର ଜନୈକ ମନ୍ତ୍ରୀ ଭାବରେ ଶିକ୍ଷା, ଅର୍ଥ, ଜଙ୍ଗଲ, କୃଷି ଓ ବିକାଶ ଦାୟିତ୍ୱରେ ଥାଇ ଜଣେ ସୁଯୋଗ୍ୟ ମନ୍ତ୍ରୀ ଓ ସୁଦକ୍ଷ ପ୍ରଶାସକର ପରିଚୟ ରଖିଯାଇ ଅଛନ୍ତି । ସେ ଜଙ୍ଗଲ ବିଭାଗର ମନ୍ତ୍ରୀ ଥିବାବେଳେ ବାରଙ୍ଗ ଷ୍ଟେସନ୍ ନିକଟବର୍ତ୍ତୀ ସୁରମ୍ୟ ନନ୍ଦନକାନନର ପରିକଳ୍ପନା କରିଥିଲେ ।

ସେ ୧୯୧୯ ରେ ସତ୍ୟବାଦୀରେ ଯୋଗଦେଇ 'ସମାଜ' ସହିତ ସମ୍ପୃକ୍ତ ହୋଇଥିଲେ ମଧ୍ୟ ୧୯୩୨ ରେ ସେ 'ସମାଜ'ର ସାମୟିକ ସମ୍ପାଦନା ଦାୟିତ୍ୱ ଗ୍ରହଣ କରିଥିଲେ । 'ସମାଜ'ର ତତ୍କାଳୀନ ସମ୍ପାଦକ ଲିଙ୍ଗରାଜ ମିଶ୍ର ଓଡ଼ିଶାର ଶିକ୍ଷାମନ୍ତ୍ରୀତ୍ୱ ଗ୍ରହଣ କରିବାରୁ 'ସମାଜ'ର ପୂର୍ଣ୍ଣ ସମ୍ପାଦନା ଦାୟିତ୍ୱ ରାଧାନାଥଙ୍କ ଉପରେ ନ୍ୟସ୍ତ ହୋଇଥିଲା ଓ ସେ ୧୯୫୨

ପର୍ଯ୍ୟନ୍ତ ଏହି କାର୍ଯ୍ୟ ପରିଚାଳନା କରିଥିଲେ । ପରେ ୧୯୫୨ଠାରୁ ୧୯୬୧ ପର୍ଯ୍ୟନ୍ତ ସେ ଓଡ଼ିଶାର ଜଣେ ମନ୍ତ୍ରୀ ହେବାରୁ 'ସମାଜ'ର ସମ୍ପାଦନା ଦାୟିତ୍ୱ ତୁଲାଇବା ତାଙ୍କ ପକ୍ଷରେ ସମ୍ଭବପର ନଥିଲା । ପରେ ୧୯୬୧ ଠାରୁ ଅଦ୍ୟାବଧି 'ସମାଜ'ର ସମ୍ପାଦକ ଭାବରେ ସେ ସମସ୍ତ କାର୍ଯ୍ୟ ନିର୍ବାହ କରି ଆସୁଅଛନ୍ତି । 'ସମାଜ' ସହିତ ସୁଦୀର୍ଘ ପଚାଶବର୍ଷ ଧରି ରାଧାନାଥ ସମ୍ପୃକ୍ତ ହୋଇ ରହିବା ପରେ ତହିଁରୁ ଅବ୍ୟାହତି ନେବାକୁ ସେ ଚାହିଁଥିଲେ କିନ୍ତୁ 'ଭାରତ ଲୋକସେବକ ମଣ୍ଡଳ' ତାଙ୍କୁ ଅବ୍ୟାହତି ଦେବାକୁ ଚାହିଁଲେ ନାହିଁ । ଏହା 'ସମାଜ' କ୍ଷେତ୍ରରେ ଯେତେ ନୁହେଁ ଓଡ଼ିଶାର ସାମ୍ବାଦିକ ତଥା ସମାଜ ସେବା କ୍ଷେତ୍ରରେ ଆନନ୍ଦର କଥା ।

ରାଧାନାଥ ନିଜକୁ ସବୁବେଳେ କାର୍ଯ୍ୟବ୍ୟସ୍ତ ରଖିବାକୁ ଭଲ ପାଆନ୍ତି । 'ସମାଜ' ପରି ଏକ ବଡ଼ ପ୍ରକାଶନ କ୍ରମବର୍ଦ୍ଧିଷ୍ଣୁ ଅନୁଷ୍ଠାନର ସର୍ବମୟକର୍ତ୍ତାର ଦାୟିତ୍ୱରେ ଅଧିଷ୍ଠିତ ଥିଲାବେଳେ ତାଙ୍କୁ ନିଶ୍ୱାସ ମାରିବାକୁ ସମୟ ନଥିଲା ବେଳେ ସେ ବିଭିନ୍ନ ସ୍ଥାନ ଗସ୍ତ କରିବା ସଙ୍ଗେ ସଙ୍ଗେ ବିଭିନ୍ନ ସଭା ସମିତିରେ ଭାଷଣ ଦେବା ଓ ବିଭିନ୍ନ ଅନୁଷ୍ଠାନ ସହିତ ସମ୍ପୃକ୍ତ ହୋଇ ସେ ସବୁର ପୃଷ୍ଠପୋଷକତା କରିଥାଆନ୍ତି । ସେ ବହୁ ଅନୁଷ୍ଠାନର ସଭ୍ୟ ବା ସଭାପତି । ସମ୍ବାଦ ପତ୍ରର ପୃଷ୍ଠା ଖୋଲିଲେ ଟେଗୋର ସମିତି ଠାରୁ ଆରମ୍ଭ କରି ଇଞ୍ଜିନିୟରମାନଙ୍କର ସଭା ପର୍ଯ୍ୟନ୍ତ, ଝୋଟପାଲର ଦୁର୍ଦ୍ଦଶାଗ୍ରସ୍ତ ଜନ ଦୁଃଖୀଙ୍କୁ ଆଶ୍ୱାସନା ଦେବାଠାରୁ ଆରମ୍ଭ କରି ସର୍ବଧର୍ମ ମହାସଭାରେ ଉଦ୍‌ବୋଧନ ଦେବାପର୍ଯ୍ୟନ୍ତ ସକଳ କାର୍ଯ୍ୟରେ ରାଧାନାଥଙ୍କର ନାମ ସଂଯୁକ୍ତ ଥିବା ଦେଖାଯାଏ । ଏତେ କାର୍ଯ୍ୟ ବ୍ୟସ୍ତତା ସତ୍ତ୍ୱେ ଏବଂ ବାର୍ଦ୍ଧକ୍ୟ ସତ୍ତ୍ୱେ ସେ ଯେ ନିଜ ଉପରକୁ ଏତେ କର୍ମଜଞ୍ଜାଳ ଡାକି ଆଣନ୍ତି ଓ ସେ ସବୁ କାର୍ଯ୍ୟକୁ ସୁନ୍ଦର ଭାବରେ ସଂପନ୍ନ କରନ୍ତି ତାହା ଦେଖିଲେ ବିସ୍ମିତ ହେବାକୁ ପଡ଼େ । ଏପରି ବ୍ୟକ୍ତି କେବଳ ଓଡ଼ିଶାରେ କାହିଁକି ଅନ୍ୟତ୍ର ହୁଏତ ଖୁବ୍ କମ୍ ଥିବେ ।

ରାଧାନାଥଙ୍କର ପ୍ରାଣ ଜଣେ ଗ୍ରାହକର ପ୍ରାଣ । ଓଡ଼ିଆ ଭାଷା ଓ ସାହିତ୍ୟର ସମୃଦ୍ଧ ଉନ୍ନତି ନିମନ୍ତେ ସେ ସର୍ବଦା ଚେଷ୍ଟିତ । ତାଙ୍କ

ଉଦ୍ୟମରେ ସମାଜ ଅନୁଷ୍ଠାନ ସମୂହ ଏକ ନିର୍ଭର ଯୋଗ୍ୟ ଲାଇବ୍ରେରୀ ଓ ଗୋପବନ୍ଧୁ 'ସାହିତ୍ୟ ମନ୍ଦିର' ପ୍ରତିଷ୍ଠା କରାଯାଇଅଛି । ଗୋପବନ୍ଧୁ 'ସାହିତ୍ୟ ମନ୍ଦିର' ଦ୍ୱାରା ଓଡ଼ିଶାର ବଶିଷ୍ଟ ଲେଖକମାନଙ୍କର ଲେଖା ଓ ଅନୁବାଦକୁ ପୁସ୍ତକାକାରରେ ପ୍ରକାଶିତ କରାଯାଇ ଅଛି ଓ ତଦ୍ୱାରା ଆମର ସାହିତ୍ୟ ଯେ ସମୃଦ୍ଧ ହୋଇଅଛି ଏଥିରେ ସନ୍ଦେହ ନାହିଁ ।

ରାଧାନାଥ ଧର୍ମପ୍ରାଣ ଓ ଈଶ୍ୱର-ବିଶ୍ୱାସୀ । ଅଧିକାଂଶ ଆଧ୍ୟାତ୍ମିକ ସଭା ସମିତିରେ ଯୋଗ ଦେଇ ସେ ଯେଉଁ ଉଦ୍‌ବୋଧନ ଦେଇଥାଆନ୍ତି ତହିଁରେ ତାଙ୍କର ଆଧ୍ୟାତ୍ମିକ ଜ୍ଞାନ, ଭକ୍ତି, ଶାସ୍ତ୍ରାନୁରକ୍ତିର ପରିଚୟ ମିଳିବା ସଙ୍ଗେ ସଙ୍ଗେ ଧର୍ମ ଓ ସଂସ୍କୃତି ସହିତ ବିଜ୍ଞାନର ଓ ବର୍ତ୍ତମାନର ଜୀବନର ସୁନ୍ଦର ସମନ୍ୱୟ ସାଧନ ସମ୍ଭବ ସେ ଦିଗରେ ଯଥେଷ୍ଟ ସୂଚନା ମିଳିଥାଏ ।

ରାଧାନାଥ ସବୁ କଥାକୁ ପ୍ରଶଂସକର ଦୃଷ୍ଟିରେ ଅବତାରଣା କରୁଥିଲେ ମଧ୍ୟ ସମାଲୋଚକର ଦୃଷ୍ଟିରେ ସେ ସବୁକୁ ଅନୁଧ୍ୟାନ କରି ଥାଆନ୍ତି । ପରନିନ୍ଦା ଓ କଟୁ ସମାଲୋଚନା ଏ ଯୁଗର ଏକ ସାଧାରଣ ନିୟମ ହୋଇ ଯାଇଥିଲାବେଳେ ରାଧାନାଥଙ୍କର କଥା ଓ କାର୍ଯ୍ୟ ତାର ଏକ ଜୀବନ୍ତ ବ୍ୟତିକ୍ରମ । ତାଙ୍କର ମିଷ୍ଟଭାଷା ଓ ସବୁଥିରେ ମହତ୍ତ୍ୱର ଅନୁସନ୍ଧାନ ପ୍ରୟାସ ତାଙ୍କୁ ଲୋକପ୍ରିୟ କରିଅଛି । ସମ୍ଭବତଃ ସେଇଥିପାଇଁ ବହୁ ଅନୁଷ୍ଠାନ ଓ ବହୁବ୍ୟକ୍ତି ତାଙ୍କର ସହଯୋଗ ଲୋଡ଼ି ଥାଆନ୍ତି । କିନ୍ତୁ ଯାହା ସମାଲୋଚନା ଯୋଗ୍ୟ ତାକୁ ସେ ସମାଲୋଚନା କରିବାକୁ ଭୁଲନ୍ତି ନାହିଁ । ଏହାହିଁ ତାଙ୍କ ବ୍ୟକ୍ତିତ୍ୱ ଓ ଅଭିରୁଚିର ଏକ ପ୍ରେରଣାମୟ ଗୃରବିକ ବିଭବ ।

ସେ ସରଳ ଅଥଚ ମାର୍ଜିତ ଭାଷାରେ ଲେଖାଲେଖି କରନ୍ତି ଓ ଭାଷଣ ଦିଅନ୍ତି । ତାଙ୍କର ଲେଖାପରି ତାଙ୍କର ଭାଷଣ ମଧ୍ୟ ହୃଦୟସ୍ପର୍ଶୀ । ବିଭିନ୍ନ ବିଷୟକୁ ନିଜର ଅଗାଧ ଜ୍ଞାନ ବଳରେ ସେ ସୁନ୍ଦର ଭାବରେ

ବିଶ୍ଳେଷଣ କରି ପାରନ୍ତି, ତାଙ୍କର ସେହି ଅନୁଶୀଳନ ପଟୁତା ଓ ପ୍ରାଞ୍ଜଳ ଦୃଷ୍ଟି ପ୍ରକାଶଭଙ୍ଗୀ ଶ୍ରୋତା ଓ ପାଠକଙ୍କୁ ମୁଗ୍ଧ କରିଥାଏ ।

ସାମ୍ବାଦିକତା ସମ୍ପର୍କରେ ରାଧାନାଥ କୌଣସି ଡିଗ୍ରୀ ଗ୍ରହଣ କରି ନ ଥିଲେ ମଧ୍ୟ ସାମ୍ବାଦିକତାକୁ ଯେ ଏକ ଉପଯୁକ୍ତ ଦିଗ୍‌ଦର୍ଶନ ଦେଇ ପାରି ଅଛନ୍ତି । ଯାହା ତାଙ୍କ ହାତରକୁ ଆସିଛି ସେ ସେହି ମୌଳିକ ପଥରେ ଆଗେଇ ଯାଇଛନ୍ତି କିନ୍ତୁ ଆଶ୍ଚର୍ଯ୍ୟର କଥା ଉପଯୁକ୍ତ ଶିକ୍ଷାରୁ ବଞ୍ଚିତ ଜଣେ ବ୍ୟକ୍ତିର ଅଭିଜ୍ଞତା ପ୍ରସୂତ କାର୍ଯ୍ୟ ଆଦର୍ଶ ସ୍ଥାନୀୟ ହୋଇ ଉଠିଛି । ତାହାର 'ସମାଜ' ଏକ ସୁନ୍ଦର ଦୃଷ୍ଟାନ୍ତ । ସେହି ଏକ ପ୍ରକାର ସମ୍ବାଦକୁ ପରିବେଷଣ କରି ବିଭିନ୍ନ ନାମରେ ବିଭିନ୍ନ ସମ୍ବାଦପତ୍ର ପ୍ରକାଶ ପାଉଥିଲେ ମଧ୍ୟ 'ସମାଜ'ହିଁ ବିଶାଳ ଓଡ଼ିଶାରେ ଏବେ ବି ମୁଖପତ୍ରର ସମ୍ମାନ ଲାଭ କରୁଅଛି । ଓଡ଼ିଶାରେ ଖବର କାଗଜ କହିଲେ 'ସମାଜ'କୁ ଓ 'ସମାଜ' କହିଲେ ଖବର କାଗଜକୁ ବୁଝାଇଥାଏ । 'ସମାଜ'ର ଏହି ଲୋକପ୍ରିୟତାର ପୃଷ୍ଠଭୂମିରେ ଗୋପବନ୍ଧୁଙ୍କର ଆଶୀର୍ବାଦ ସାଙ୍ଗକୁ ରାଧାନାଥଙ୍କର ସରଳ, ମାର୍ଜିତ, ଭାଷା ଓ ରୁଚିକର ସମ୍ବାଦ ଓ ମତ ପରିବେଷଣ କରିବାର ସନ୍ତୋଷପ୍ରଦ ଶୈଳୀ ଯେ ବିଦ୍ୟମାନ ଏହା ଅସ୍ୱୀକାର କରି ହେବ ନାହିଁ । ଅଳ୍ପ ଶିକ୍ଷିତ ହେଲେ ମଧ୍ୟ ସମର୍ଥ ସମ୍ପାଦକ ଭାବରେ ରାଧାନାଥ ତାଙ୍କର ନିଷ୍ଠା ଓ ଦକ୍ଷତାର ସୁନ୍ଦର ପରିଚୟ ରଖି ଅଛନ୍ତି ।

ରାଧାନାଥଙ୍କର ରୁଚି ଓ ଦୃଷ୍ଟି ଜାତୀୟ ସଂସ୍କୃତି ଅଭିମୁଖୀ, ସେ ସବୁବେଳେ ଆମର ପାରମ୍ପରିକ ପୋଷାକ, ଖାଦ୍ୟ ଓ ଚଳଣି ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଥାଆନ୍ତି । ଆମଦେଶରେ ସଂସ୍କୃତି ସମ୍ପର୍କରେ ଆଲୋଚନା କରିବାକୁ ଯାଇ ଗାନ୍ଧୀ, ଗୋପବନ୍ଧୁ ଏପରିକି ଆଣ୍ଡ୍ରୁଜ ସାହେବଙ୍କର ସଂସ୍କୃତି ପ୍ରତି ସମ୍ମାନ ବୋଧକୁ ସ୍ମରଣ କରି କହି ଅଛନ୍ତି—

"...ପାଶ୍ଚାତ୍ୟ ସଭ୍ୟତାର ପ୍ରଭାବରୁ ହେଉ ବା ଅନ୍ୟ ଯେ କୌଣସି କାରଣରୁ ହେଉ ଭାରତର ସ୍ୱାଧୀନତା ଲାଭ ପରେ ସାହେବୀ

ପୋଷାକ ପରିଚ୍ଛଦ, ଖିଆପିଆ, ଆଚରଣ ଓ ଆଚାରରେ, ପ୍ରବଳ ଭାବରେ ପ୍ରଭାବ ବିସ୍ତାର କରୁଛି । ଅର୍ଥନୈତିକ କାରଣ ଦୃଷ୍ଟିରୁ ଏ ସବୁର ଉପଯୋଗୀତା ଅଛି ବୋଲି ଅନେକ କହି ପାରନ୍ତି କିନ୍ତୁ ଭାରତୀୟ ଜୀବନ ଓ ସଂସ୍କୃତି ସହିତ ଏହା ଖାପ ଖାଇପାରୁ ନାହିଁ । ବରଂ ଏହା ଅତି-ବ୍ୟୟସାଧ ହୋଇ ଅର୍ଥନୈତିକ ସମସ୍ୟା ସୃଷ୍ଟି କରୁଛି । ଏପରିକି ଆଜି କାଲିର ଖାଇବା ପିଇବା ଓ ଦୈନିକ ଜୀବନ ଅସଂଖ୍ୟ ପ୍ରକାର ସଂକ୍ରାମକ ରୋଗବ୍ୟାଧି ସଞ୍ଚାରର, କାରଣ ହେଉଛି । ଶାସ୍ତ୍ରରେ କଥିତ ଅଛି; ସ୍ୱଧର୍ମେ ନିଧନଂ ଶ୍ରେୟଃ ପର ଧର୍ମୋ ଭୟାବହଃ । ପାଶ୍ଚାତ୍ୟ ସଭ୍ୟତା, ସଂସ୍କୃତି ଅନେକ ପରିମାଣରେ ଖାଇବା, ପିନ୍ଧିବା ରହଣି ଚଳଣି ପ୍ରଭୃତି ଜୀବନର ସାଧାରଣ କ୍ରିୟାକଳାପରେ ମଧ୍ୟ ପ୍ରକାଶ ପାଏ । ଏ ସବୁରେ କୌଣସି ଦିଗ୍ଭ୍ରାନ୍ତ ବା ପରିବର୍ତ୍ତନ ଅନେକାଂଶରେ ଅନେକ ସମୟରେ ସଭ୍ୟତା ଓ ସଂସ୍କୃତିର ଭିତ୍ତିକୁ ବିକୃତ ଓ ଧ୍ୱଂସ କରିଦିଏ ।"

ଏହି ସଂସ୍କୃତି ପ୍ରେମୀ ବିଶ୍ୱନାଥଙ୍କର ପୋଷାକପତ୍ରରେ ଓଡ଼ିଶାର ପାରମ୍ପରିକ ପୋଷାକ ଏବେ ବି ଶୋଭା ପାଉଅଛି । ଆଜି ଯୁବକଙ୍କଠାରୁ ଆରମ୍ଭ କରି ବୟସ୍କ ଲୋକମାନଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ଦେହରେ ସାହେବି ପୋଷାକ ଶୋଭା ପାଉଥିବା ବେଳେ ବିଶ୍ୱନାଥ ଧୋତି ପଞ୍ଜାବି ଗୁଦଡ଼ି ପରିଧାନ କରିଥାଆନ୍ତି । ସ୍କାଉଟମାନଙ୍କୁ ଉତ୍ସାହିତ କରିବା ନିମନ୍ତେ ସାମୟିକ ଭାବରେ ସ୍କାଉଟମାନଙ୍କ ଗହଣରେ ହାଫ୍‌ପ୍ୟାଣ୍ଟ ଆଦି ସ୍କାଉଟ ପୋଷାକ ପରିଧାନ କରିବା ଛଡ଼ା ସେ କେବେହେଲେ ପ୍ୟାଣ୍ଟ ସାର୍ଟ ଆଦି ବିଦେଶୀ ପୋଷାକ ପରିଧାନ କରନାହାନ୍ତି । ଏହାହିଁ ତାଙ୍କର ସଂସ୍କୃତି ପ୍ରୀତିର ନିଦର୍ଶନ ।

ଆଜି ଦେଶବ୍ୟାପୀ ଉତ୍କଳମଣି ଗୋପବନ୍ଧୁଙ୍କର ଜନ୍ମଶତ ବାର୍ଷିକ ଉତ୍ସବ ବହୁ ଉତ୍ସାହ ଓ ଉଦ୍ଦୀପନା ମଧ୍ୟରେ ସଂପନ୍ନ ପାଳିତ ହେଉଥିବା-ବେଳେ ଉତ୍କଳମଣିଙ୍କ ପାଦତଳେ ଯିଏ, ନିଜ ଜୀବନର ସମସ୍ତ ସୁଖ ଓ ସମ୍ଭାବନାକୁ ଅର୍ପଣ କରି ଦେଇଥିଲେ, ଯେଉଁ ଉତ୍କଳମଣିଙ୍କ ଉତ୍ସାହ ଓ

କିନ୍ତି ଓଡ଼ିଶା ଯେ ସବୁ କିଛି ପାର୍ଥିବ ବିଭବକୁ ଜଳାଞ୍ଜଳି ଦେଇ ମଧ୍ୟ ମୃତ ପରି ଲୁଚି ଆସିଥିଲେ ସତ୍ୟବାଦୀର ବକୁଳ ଆଶ୍ରମକୁ ମହାମାନବର ସଙ୍ଗ ସାହଚର୍ଯ୍ୟର ସ୍ୱର୍ଗୀୟ ଅନୁଭୂତି ଲାଭ କରିବାକୁ, ସେହି ମୌନୀ ଦେଶସେବକ ଜାତୀୟ ନେତା ଓ ଗୋପବନ୍ଧୁଙ୍କର ପଟ୍ଟଶିଷ୍ୟ ରାଧାନାଥଙ୍କୁ ଆଜିପରି ଦିନରେ ଶ୍ରଦ୍ଧା ଓ ଭକ୍ତିର ସହିତ ସମ୍ବର୍ଦ୍ଧନା ଜ୍ଞାପନ କରିବାର ଆବଶ୍ୟକତା ରହିଛି ।

ଶ୍ରୀ ରାଧାନାଥ ରଥଙ୍କ ସମ୍ମାନ ସମାରୋହର ଏକ ସ୍ମୃତିଚିହ୍ନ ଅନୁଷ୍ଠାନ ।

# ଔପନ୍ୟାସିକ ଗୋପୀନାଥ ମହାନ୍ତି
# ଏକ ପରିଚିତି

ଅଧ୍ୟାପକ **ପଠାଣି ପଟ୍ଟନାୟକ**

ସେ ଅନେକବର୍ଷ ତଳର କଥା । ବର୍ତ୍ତମାନ ଜୀବିତଥିବା ସାହିତ୍ୟ-ପତ୍ରମାନଙ୍କ ମଧ୍ୟରେ ପ୍ରାଚୀନତମ 'ଡଗର' ୧୪ଶ ବର୍ଷ ଚତୁର୍ଥ ସଂଖ୍ୟାରେ 'ମୁଁ କାହିଁକି ଲେଖେ' ଶିରୋନାମାରେ ଏକ ଲେଖା ପ୍ରକାଶ କରିଥିଲେ । ଏହାର ଲେଖକ ଥିଲେ ଆଧୁନିକ ଓଡ଼ିଆ ସାହିତ୍ୟର ସ୍ୱନାମଧନ୍ୟ ଗୋପୀନାଥ ମହାନ୍ତି । ସେତେବେଳେ ସେ କାହିଁକି ଲେଖୁଛନ୍ତି ବୋଲି ଯେଉଁ ଉତ୍ତର ଦେଇଥିଲେ, ଆଜି ତାଙ୍କର ସାମଗ୍ରିକ କୃତିର ଆଲୋଚନା ପ୍ରସଙ୍ଗରେ ଅତ୍ୟନ୍ତ ପ୍ରଣିଧାନଯୋଗ୍ୟ । ସେ ଲେଖିଥିଲେ ଏହିପରି—

"ଆଜି ମୁଁ ଭାବୁଛି – କାହିଁକି ଲେଖିବି ବୋଲି ଯଦି ଆଗ ମୀମାଂସା କରିସାରି ପଛେ ଲେଖିବାକୁ ବସିଥାନ୍ତି ବା ଲେଖୁ ଲେଖୁ ଭାବୁଥାନ୍ତି କାହିଁକି ଲେଖୁଛି—ହୋଇପାରେ ମୁଁ ହୋଇଥାନ୍ତି ଜଣେ ବଡ଼ ବିଶ୍ଳେଷକ ବା ଭାବୁକ, କିନ୍ତୁ କଲମ ଅଟକି ଯାଆନ୍ତା ବୋଧହୁଏ । କାରଣ ଏ କାହିଁକି ଏକ ମହାତୃଷ୍ଣା, ତାର ବିରାମ ନାହିଁ । ଯେତେ ଉତ୍ତର ଖୋଜି ଥିଲେ ବି ଆହୁରି ରହିଯାଏ ବାକି, ମନରେ ପ୍ରଶ୍ନ ଚିଆଁଇ ରଖି

ନୂଆ ଯୁଗ ନେଇଆସେ ମାନବ ସଭ୍ୟତାକୁ ଆଗକୁ ଆଗକୁ । ପ୍ରଶ୍ନର ହାଉଁ ମେଲି ରହେ । ସୁତରାଂ କାହିଁକିର ଉତ୍ତର ଦେବା କଷ୍ଟ । ନିଜ ବିଷୟରେ ଆହୁରି କଷ୍ଟ । × × × ×

ନିଭୃତ ଆଶା ନାହିଁ ତଥାପି ଲେଖାର ଭୂତ ଝୁଣ୍ଟିଖାଏ । ସ୍ୱଳ୍ପ ଅବସର, ଦୃଷ୍ଟି ଶକ୍ତି କମିଯାଏ । ସ୍ୱାସ୍ଥ୍ୟରେ ଘଟେ ଭଟ୍ଟା । ବୈଷୟିକ ଅବସ୍ଥାର ଘଟେ କ୍ଷତି ।

ତେବେ ମୁଁ ଲେଖେ କାହିଁକି ? ତାର ସହଜ ଉତ୍ତର,—କାରଣ ଲେଖା ମାଦକ । ଏ ମୋ ମନର ସହଜ ସ୍ୱାଭାବିକ ପ୍ରକ୍ରିୟା ।

ଏହି ପ୍ରକ୍ରିୟାକୁ ଆଲୋକିତ ଦେଖିଲେ ପ୍ରଥମେ ଲାଗେ ମୁଁ ଲେଖେଁ କାରଣ ମୁଁ ଭଲପାଏଁ । ମୁଁ ମୋର ଦେଖା ଅଦେଖା ଜଗତକୁ ଭଲ ପାଏଁ, ମଣିଷକୁ ଭଲପାଏଁ, ଜୀବନକୁ ଭଲପାଏଁ । ମାଟିଆରେ ପାଣି ପଡ଼ିଲା ପରେ ଗନ୍ଧ ଗନ୍ଧେଇ ଉଠେ ମୋ ଘଟରେ ମୋର ଭଲ ପାଇବା, ଉଛୁଳି ପଡ଼େ ହୁଏ ମୋର ଲେଖା । ଏହି ଜୀବ ସମ୍ପର୍କ ଯୋଗୁଁ ଯେତେପ୍ରକାର ପ୍ରାଣରେ ଦାହ, ନିଜ ବାହାର ଲଗି ମନର କୋହ ଅଯାଚିତ । ଘରର ସମସ୍ୟା ପରର ଦୁଃଖ ନିଜର ହୋଇଯାଏ । ପୁଣି ବାହାରର ଆନନ୍ଦ ଉଲ୍ଲାସ ପଶେ ନିଜଠି । ଯେତେଥର ମୁଁ ଲେଖି ବସେ ସେତେଥର ମୋ ମନ କନ୍ଦରାରେ ନିବିଡ଼ ସମ୍ବନ୍ଧ ବାନ୍ଧେ ଏମାନଙ୍କ ସହିତ—ଏହି ଦେଶ ଯାହାର ପ୍ରତି ଧୂଳିକଣା ମୋ ପାଇଁ ସ୍ନେହର ସମ୍ଭାର । ଏହି ପ୍ରକୃତି—ଯାହା ମୋର ବ୍ୟକ୍ତିତ୍ୱର ଆଧାର, ଏହି ମଣିଷ, ସେ ଯେଉଁ କୋଣରେ ଯେତେ ଦୂରରେ ଥାଉ ପଛେ ମୋଠି ତାଁଠି ଏକା ରକ୍ତର ଧାର । ଏ ସମ୍ବନ୍ଧ ଅତି ଘନିଷ୍ଠ ମିଳନ କ୍ରିୟା, ତାର ଆନନ୍ଦ ଅନ୍ୟତ୍ର ନାହିଁ । ତେଣୁ ଚେଷ୍ଟିତର ଅନ୍ଧାରରେ ଜାଳି ରଖି ହୁଏ ଦୀପ ଶିଖା; ମିଳନରୁ ସୃଷ୍ଟି ଉପୁଜେ—ଭବେ ନାହିଁ ହେଉଥିବା ଦୁନିଆର ହାଟରେ ତାର ମୂଲ ତଉଲ କେତେ !"

ଗୋପୀନାଥ ସେହିବାବଦରୁ ଲେଖି ଚାଲିଛନ୍ତି । ଯଶ ଲୋକମାନଙ୍କୁ ଅପେକ୍ଷା କରିନାହାନ୍ତି । ଅପେକ୍ଷା କରିଥିଲେ ତାଙ୍କର କଲମ ଅଟକି ଯାଇଥାନ୍ତା । ତେଣୁ ଓଡ଼ିଆ ସାହିତ୍ୟରେ ଗୋପୀନାଥ ଦାଦିବୁଢ଼ା ୧୯୪୪, ପରଜା ୧୯୪୫, ଅମୃତସନ୍ତାନ ୧୯୪୭ ହରିଜନ ୧୯୪୮, ଶରତବାବୁଙ୍କ ଗଳି ୧୯୫୦ର ଲେଖକ ହିସାବରେ ପ୍ରତିଷ୍ଠା ଅର୍ଜନ କରିଥାନ୍ତେ । ଅବଶ୍ୟ ଏହି କେତେଗୋଟି ପୁସ୍ତକ ପାଇଁ ସେ ଓଡ଼ିଆ ସାହିତ୍ୟକୁ ସର୍ବଭାରତୀୟ ସ୍ତରରେ ସ୍ୱୀକୃତ ଓ ସମ୍ମାନ ଆଣି ଦେବାପାଇଁ ସକ୍ଷମ ହୋଇ ପାରିଛନ୍ତି । କିନ୍ତୁ ତାଙ୍କର ଲେଖନୀ କେବେ ହାର ମାନି ନାହିଁ । ସ୍ୱୀକୃତି, ସମ୍ମାନ ଓ ଉପଢୌକନ ପାଇଁ ଅପେକ୍ଷା କରିନାହିଁ । ତେଣୁ ସେ ଗୋଟିକ ପରେ ଗୋଟିଏ ଗଳ୍ପ ସଙ୍କଳନ ଓ ଉପନ୍ୟାସ ପ୍ରକାଶ କରି ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ସମୃଦ୍ଧ କରି ପାରିଛନ୍ତି ।

ଗୋପୀନାଥଙ୍କର ଅନ୍ୟାନ୍ୟ ଲେଖାଗୁଡ଼ିକ ହେଲା ରାହୁର ଛାୟା ୧୯୫୨, ଦୁଇପସ ୧୯୫୪, ସପନମାଟି ୧୯୫୪, ଦାନାପାଣି, ୧୯୫୫, ଶିବଭାଇ ୧୯୫୮, ଅପହଞ୍ଚ ୧୯୬୧, ଲୟ ବିଲୟ ୧୯୬୧ ତନ୍ତ୍ରୀକାର ୧୯୬୩, ମାଟିମଟାଳ ୧୯୬ , ପାହାନ୍ତି ୧୯୭୧, ଆକାଶ ସୁନ୍ଦରୀ ୧୯୭୨, ଅନଳନଳ ୧୯୭୩, ଘାପଂକ୍ଷ୍ୱୋତି ୧୯୭୪, ଉତ୍କଳଲକ୍ଷ୍ମୀ ୧୯୬୭, ଏତଦ୍‌ବ୍ୟତୀତ, ବିଭିନ୍ନ ସମୟରେ ତାଙ୍କର କେତେଗୋଟି କଥା ସାହିତ୍ୟ ସଙ୍କଳନ ମଧ୍ୟ ଉଲ୍ଲେଖଯୋଗ୍ୟ । ସେମାନଙ୍କ ମଧ୍ୟରେ ଘାସଫୁଲ, ଛାଇ ଆଲୁଅ, ରଣଧନ୍ଦୋଳ, ଗୁପ୍ତଗଙ୍ଗା, ନା ମନେ ନାହିଁ, ଉଡ଼ନ୍ତାଖଇ, ପୋଡ଼ାକପାଳ ପ୍ରଭୃତି ପ୍ରଧାନ । କେବଳ ଗଳ୍ପ ଓ ଉପନ୍ୟାସରେ ଗୋପୀନାଥ ନିଜର ଚିରନ୍ତନ ସ୍ୱାକ୍ଷର ଲିପିବଦ୍ଧ କରି ନାହାନ୍ତି, ଜଣେ ଗବେଷକ, ଆଲୋଚକ ଭାଷାତତ୍ତ୍ୱବିଦ୍ ଏବଂ ନାଟ୍ୟକାର ଭାବରେ ମଧ୍ୟ ସେ ପରିଚିତ । ତାଙ୍କର ନାଟକ ହେଉଛି ମହାପୁରୁଷ ଓ ମୁକ୍ତିପଥେ । କୁଭିକନ୍ଧ ଭାଷାତତ୍ତ୍ୱ, ଗଦବା ଭାଷା, କନ୍ଧ ପରଜା ସ୍ତୋତ୍ର ଓ ସଙ୍ଗୀତ ପ୍ରଭୃତି ତାଙ୍କର ଅନୁଶୀଳନ ଦକ୍ଷତାର ପରିଚୟ ପ୍ରଦାନ କରିଥାଏ ।

ଆଧୁନିକ ଓଡ଼ିଆ ସାହିତ୍ୟର ଏହି ମହାନ ପ୍ରତିଭା କଟକ ଜିଲାର ନାଗବାଲି ଗ୍ରାମରେ ୧୯୧୪ ଖ୍ରୀଷ୍ଟାବ୍ଦ ଏପ୍ରିଲ ମାସ କୋଡ଼ିଏ ତାରିଖରେ ଜନ୍ମଗ୍ରହଣ କରିଥିଲେ । ଓଡ଼ିଶାର ଗାଁ ଗହଳିର ଅଧିକାଂଶ ପିଲାଙ୍କ ପରି ସ୍ୱନାମାରୁ ପାଠ ପଢ଼ା ଆରମ୍ଭ କରିଥିଲେହେଁ ପରେ ରେଭେନ୍‌ସା କଲେଜରୁ ଇଂରାଜୀ ସାହିତ୍ୟରେ ଏମ୍. ଏ. ପାଶ କରିଥିଲେ ୧୯୩୬ ସାଲରେ । ସେକାଳର ପାଟନା ବିଶ୍ୱବିଦ୍ୟାଳୟରେ ପ୍ରଥମ ଶ୍ରେଣୀ ଲାଭ କରି ସେ ଗୌରବାନ୍ୱିତ ହୋଇଥିଲେ । ଗୋପୀନାଥ ଥିଲେ ସ୍ୱର ଭାଇରେ ସାନ ପିଲା ପୁଅ ସୁଦର୍ଶନଙ୍କର । ସୁଦର୍ଶନଙ୍କର କନିଷ୍ଠତମ ଭାଇ ଦଯାନିଧି କବି ଥିଲେ । ଗୋପୀନାଥଙ୍କର ଅଗ୍ରଜ କାହ୍ନୁଚରଣ ପ୍ରଖ୍ୟାତ ଓଡ଼ିଆ ଔପନ୍ୟାସିକ । ଗୋପୀନାଥ ବାଲ୍ୟକାଳରେ ପିତାଙ୍କର କର୍ମସ୍ଥଳୀ ମୋକାମାଘାଟ ଷ୍ଟେସନରେ କିଛିକାଳ ଅଧ୍ୟୟନ କରିଥିଲେ । ସେ କାଳରେ ଓଡ଼ିଶାରେ ସାଂସ୍କୃତିକ ବାତାବରଣ ନ ଥିଲା । ଚତୁର୍ଦ୍ଦିଗରେ ପ୍ରବାସୀ ସଂସ୍କୃତିର ପ୍ରଭାବରେ ଓଡ଼ିଆମାନେ ହୀନମନ୍ୟତାର ଗ୍ଳାନିରେ ବିଚଳିତ ହୋଇ ପଡ଼ୁଥିଲେ । ଗୋପୀନାଥ ୧୯୨୪ ଖ୍ରୀଷ୍ଟାବ୍ଦରେ ତତ୍କାଳୀନ ବିହାର ଓଡ଼ିଶାର ରାଜଧାନୀ ପାଟନା ସହରରେ ଶିକ୍ଷାଲାଭ କରିବା ପାଇଁ ଉପସ୍ଥିତ ହେଲେ । ଏଇଠାରେ ତାଙ୍କର ହାଇସ୍କୁଲ ଶିକ୍ଷା ଆରମ୍ଭ ହୋଇଥିଲା । ଇଂରେଜୀ ସଭ୍ୟତାର ପ୍ରତିକ୍ରିୟା ଯେଉଁ ନବଜାଗରଣ ଆନୟନ କରିଥିଲା, ଗୋପୀନାଥ ତାର ପ୍ରତ୍ୟକ୍ଷ ସମ୍ପର୍କରେ ଆସିଲେ ପାଟଣା ନଗରୀରେ । ହାଇସ୍କୁଲରେ ଥରେ 'ରାଧାନାଥ ଜୀବନ ଓ ସାହିତ୍ୟ' ଶୀର୍ଷକ ପ୍ରବନ୍ଧ ପ୍ରତିଯୋଗିତା ହେଲା । ନବମଶ୍ରେଣୀର ଛାତ୍ର ଗୋପୀନାଥ ଏହି ପ୍ରତିଯୋଗିତାରେ ପ୍ରଥମ ହୋଇ ପୁରସ୍କୃତ ହେଲେ ଏବଂ ସାହିତ୍ୟ ପ୍ରାଣ ଶିକ୍ଷକ ଅଧରଚନ୍ଦ୍ରମୋହନ ଗୋପୀନାଥଙ୍କୁ ଡକାଇ ଉତ୍ସାହିତ କଲେ । ବାଳକ ଗୋପୀନାଥଙ୍କ ମନରେ ସାହସ ଆସିଲା ଓଡ଼ିଆ ସାହିତ୍ୟ ସମ୍ପର୍କରେ ଚର୍ଚ୍ଚା ଆଲୋଚନା ଏବଂ ଲେଖାପଢ଼ା କରିବା ପାଇଁ । ସୌଭାଗ୍ୟକ୍ରମେ ମହାବିଦ୍ୟାଳୟର ଉଚ୍ଚଶିକ୍ଷା ଲାଭ କରିବା ଉଦ୍ଦେଶ୍ୟରେ ଗୋପୀନାଥ କଟକ ଫେରି ଆସିଲେ । ୧୯୩୦ ଖ୍ରୀଷ୍ଟାବ୍ଦଠାରୁ ୧୯୩୬ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ସେ ଥିଲେ ବିଖ୍ୟାତ ରେଭେନ୍‌ସା କଲେଜର ଛାତ୍ର । ସେ କାଳରେ ଓଡ଼ିଆ ସାହିତ୍ୟରେ

ସବୁଜ ସାହିତ୍ୟର ଆନ୍ଦୋଳନ ବେଶ ଦୃଷ୍ଟି କରିଥିଲା । ଭାରତୀୟ ରାଜନୀତିରେ ପ୍ରତିକ୍ରିୟାଶୀଳ ବିଦେଶୀ ଇଂରେଜ ଶାସକଙ୍କର ମୁକାବେଲା କରିବା ପାଇଁ ମୋହନଦାସ କରମଚାନ୍ଦ ଗାନ୍ଧୀ ଅସହଯୋଗ ଆନ୍ଦୋଳନ ଆରମ୍ଭ କରିଥିଲେ । ଭାରତୀୟ ଯୁବକମାନେ ଏକ ନୂତନ ଆଲୋକର ସମ୍ଭାବନାରେ ଉଜ୍ଜ୍ୱଳିତ ହୋଇ ଉଠୁଥିଲେ । ୧୯୧୭ ସାଲର ଅକ୍ଟୋବର ବିପ୍ଳବ ଏବଂ ତାର ପରବର୍ତ୍ତୀ ଅଧ୍ୟାୟରେ ପୃଥିବୀବ୍ୟାପୀ ମାର୍କ୍ସବାଦ ଆନ୍ଦୋଳନ ସାମାଜିକ ଜୀବନରେ ପ୍ରବଳ ଆଲୋଡ଼ନ ସୃଷ୍ଟି କରି ସାରିଥିଲା । ଏତିକିବେଳେ ଓଡ଼ିଆ ସାହିତ୍ୟରେ ସବୁଜ—ଆନ୍ଦୋଳନ ବିରୁଦ୍ଧରେ କେତେଜଣ ପ୍ରଗତିଶୀଳ ତରୁଣ ଗୋଷ୍ଠୀ ଆଧୁନିକ—ଗୋଷ୍ଠୀ ଗଠନ କରି ଲେଖନୀ ଚାଳନା କରିଥିଲେ । ଏହି ଆନ୍ଦୋଳନର ଅଗ୍ରଗାମୀ ଯୁବକମାନେ ଥିଲେ ଭଗବତୀଚରଣ ପାଣିଗ୍ରାହୀ, ଜନାର୍ଦ୍ଦନଚରଣ ପାଣିଗ୍ରାହୀ, ଅନନ୍ତ ପଟ୍ଟନାୟକ, ନବକୃଷ୍ଣ ଚୌଧୁରୀ, ରାମକୃଷ୍ଣ ପତି, ରାମପ୍ରସାଦ ସିଂହ ପ୍ରଭୃତି । କଲେଜ ଛାତ୍ର ଗୋପୀନାଥ ଏହି ଆନ୍ଦୋଳନ ସହିତ ନିଜକୁ ସାମିଲ କରି ଦେଲେ ଏବଂ ଡ଼ିଁ, ଭାଗ, ଉପାସୀ, ବାମ୍ବାକଳ ପ୍ରଭୃତି କେତେଗୋଟି ଗଳ୍ପ ଲେଖିଲେ । 'ଡ଼ିଁ' ଗଳ୍ପ ପ୍ରକାଶିତ ହେବା ପରେ ଏହି ତରୁଣ ଲେଖକଙ୍କର ଚିନ୍ତାଧାରା ପ୍ରତି ସମକାଳୀନ ସୁଧୀ ପାଠକ କୁଳର ଦୃଷ୍ଟି ଆକର୍ଷିତ ହେଲା । ସତେ ଯେପରି ସେ ଓଡ଼ିଆ ଗଳ୍ପ ଲେଖାର ପାରମ୍ପରିକ ଶୈଳୀ ଉପରେ ତୀକ୍ଷ୍ଣ ଆଘାତ କରିବାକୁ ଦୁଃସାହସ କରୁଥିଲେ !!

ନବଯୁଗ ସାହିତ୍ୟ ସଂସଦର ମୁଖପତ୍ର 'ଆଧୁନିକ' ଦ୍ୱିତୀୟ ସଂଖ୍ୟାରେ ଗୋପୀନାଥ ମହାନ୍ତିଙ୍କର 'ଡ଼ିଁ' ଗଳ୍ପ ଅଗ୍ରପ୍ରକାଶ କଲା । ସେ କାଳର ଓଡ଼ିଆ ଗଳ୍ପ ଉପନ୍ୟାସ ପ୍ରାୟତଃ ଥିଲା ରୋମାଣ୍ଟିକଧର୍ମୀ । ଗୋପୀନାଥ ବୟସରେ ତରୁଣ ହେଲେହେଁ ବାସ୍ତବ ଜୀବନର କାରୁଣ୍ୟ ଥିଲା ତାଙ୍କ ସାହିତ୍ୟ ସାଧନାର ମୂଳବୀଜ । ତେଣୁ 'ଡ଼ିଁ' ପରି ଗଳ୍ପର କଥାବସ୍ତୁ ଥିଲା ସମ୍ପୂର୍ଣ୍ଣ ଅଭିନବ, ଅଗ୍ନିନିକ ଏବଂ ମରମଛୁଆଁ ।

'ଡ଼ିଁ' ଗଳ୍ପ କେତେକ ଅଂଶ ଏହିପରି—

'କେଉଁଠିଯାଏଁ ଗଡ଼ିଆ ପାହାଡ଼ ଫଟିଲା ଦୁମ୍-ଦୁମ୍-ଦୁମ୍ । ଓଳି ବୃଷ୍ଟିର ନଦଟା ହୁଙ୍କାରି ଭାଙ୍ଗିଗଲା । ଖାଲିଏଟି କାଠର ଫାଳ ବାଡ଼େ ଅନ୍ଧାର ହାଲୁକା ହେଲାଣି । ଛୋଟିଆ ଘର ଭିତରେ ଥରେ ଆଖି ବୁଲେଇ ଆଣିଲା । × ×

ଓଁ ଅଟେଇଲା, ବାହ୍ମି, ପାଳଟି ଧାନଭଡ଼ା । ଶିନ୍ନ ନାଳି ଗରଘର ବୋଝ ନେଇ, ଗୋବରପାଣି ଛିଞ୍ଚିବା ଆରମ୍ଭ ହେଲା ବାଘନମଙ୍ଗା ପର୍ଯ୍ୟନ୍ତ । ସବୁଦିନର ରୋଜନା କାମ, ତଥାପି ଆଜି କାହିଁକି ମନଟା କାନ୍ଦୁଛି, କାଠ ହୃଦଟା ସଢେଇ ଉଠୁଛି । × × × କୁଇଲୁଆ ବାଘନ ମାଝି ବର୍ଷି ଓ ସାବିଳା ଜୀବନରେ ଦୁଃଖ ସବୁଦିନେ, ସୁଖ କେଉଁଠି ଅଛି କମ୍, କଅଁଳ କଥା ଶୁଣିଛି ଅତି ଅଳ୍ପ, ଗାଳି ଶୁଣିଛି ବେଶୀ କାମ ପାଇଁ ଜାଣିଛି ବେଶୀ, ଆଦର ସ୍ନେହ ପରିବର୍ତ୍ତେ ଖାଲି ବୋଲିଛନ୍ତି, ଭଲ ଖାଇନାହିଁ, ଭଲ ପିନ୍ଧି ନାହିଁ । ଅଗଣାରେ ଯେ ଦିନ ଦୁଇଟା ଉଡ଼ୁଥିଲେଣି - ବର୍ଷ ବର୍ଷର ବୋଝ ଡିଙ୍କେ । ତାପରେ ବାଳ ବାଢ଼ିଲା, ବଳ ଭାଙ୍ଗିଲା, ଆଖି ଖସି ହେଲାଣି ଗାଡ଼ ।"

ତିନିଆ ଜୀବନ ସଂଗ୍ରାମରେ ଏପରି ଦରଦଭରା ନିଚ୍ଛକ ଚିତ୍ର ସେ, କାଳରେ ଯେଉଁ କେତେଜଣ ଆରମ୍ଭ କରିଥିଲେ, ସେମାନଙ୍କ ମଧ୍ୟରେ ଗୋପୀନାଥ ଥିଲେ ଅନ୍ୟତମ । ଓଁ 'ଉପାର୍ଯ୍ୟ' ଠାରୁ ନେଇ ତାଙ୍କର ପ୍ରେମ ପରଜା, ହରିଜନ ପରି ଉପନ୍ୟାସର ଜିବନ୍ତ ଚରିତ୍ର ନୂଆଭାବରେ ଯାଉଥିଲା, ଏହା ପରେ ଇତିହାସରେ ପ୍ରମାଣିତ ହୋଇଗଲା ।

ଏମ୍.ଏ. ପାଶ କରି ଗୋପୀନାଥ ଡେପୁଟି କଲେକ୍ଟର ଭାବରେ କର୍ମମୟ ଜୀବନ ଆରମ୍ଭ କଲେ । ଇଂରେଜ ରାଜତ୍ୱକାଳରେ ଶାସନକଳର ସଭ୍ୟଗଣ ଅତ୍ୟନ୍ତ ରାଜକୀୟ ଆଟୋପ ମଧ୍ୟରେ ଚଳଫେର କରୁଥିଲେ । ବିଦେଶୀ ଶାସକମାନଙ୍କ ପ୍ରତି ଆନୁଗତ୍ୟ ଏବଂ ଜାତାର ଅହଙ୍କାର ସେମାନଙ୍କୁ ଜନଜୀବନଠାରୁ ସର୍ବଦା ଦୂରେଇ ରଖିଥିଲା । ଏ ଦେଶରି ଜନସାଧାରଣ ସେମାନଙ୍କର ଦସ୍ତୁର ଜାଣି ଥିଲେ । ମାତ୍ର ଯୁବକ ରାଜ-

କର୍ମକ୍ଷେତ୍ରେ ଗୋପୀନାଥ ଥିଲେ ଏ କ୍ଷେତ୍ରରେ ଏକ ବ୍ୟତିକ୍ରମ । ଶାସନକଳର ବୁନିଆଦ ତାଙ୍କୁ ବିଭ୍ରାନ୍ତ କରିପାରି ନ ଥିଲା । ବରଂ ତାହା ଥିଲା ତାଙ୍କ ପାଇଁ ଏକ ଚରମ ସୁଯୋଗ । ଏହି ଅବସରରେ ସେ ସମାଜକୁ ଚିହ୍ନିଲେ, ମାଟିର ମଣିଷ ସହିତ ଆତ୍ମୀୟତା ସ୍ଥାପନ କଲେ । ପ୍ରକୃତିର ସନ୍ତାନ ସରଳ ନିଷ୍କପଟ ଜନତାଙ୍କର ହୃଦୟ ମଧ୍ୟରେ ଆପଣାର ହୋଇଗଲେ । ତେଣୁ, ପରଜା, ଦାଦନ, ଅମୃତର ସନ୍ତାନ, ମାଟିମଟାଳ ପ୍ରଭୃତି ଉପନ୍ୟାସ ଗୁଡ଼ିକରେ ସମାଜ ଜୀବନର ମଣିଷ ମନର ଯେଉଁ ପରିଚୟ ଦିଆଯାଇଛି, ତାହା ଥିଲା ଭିନ୍ନ ରଙ୍ଗ, ଭିନ୍ନ ସ୍ୱାଦର, ସମ୍ପୂର୍ଣ୍ଣ ଅଭିନବ । ଜୀବନ ସହିତ ନିବିଡ଼ ସମ୍ପର୍କ ଅନୁଭୂତି ବୁଝାମଣା ନ ଥିଲେ ଏପରି ଲେଖା କେବେହେଲେ ସମ୍ଭବ ହୁଅନ୍ତା ନାହିଁ ।

ଗୋପୀନାଥଙ୍କର ବାଲ୍ୟଜୀବନ ଓ ପ୍ରାଥମିକ ଶିକ୍ଷା ବଡ଼ ସଂଘର୍ଷପୂର୍ଣ୍ଣ ଥିଲା । ୧୯୧୪ରେ ଗୋପୀନାଥ ନିଜ ଗାଁର ନାଗବାଲି ଗ୍ରାମରେ ଜନ୍ମ ହୋଇ ଅନେକଦିନ ପର୍ଯ୍ୟନ୍ତ ମାତା ଦୁର୍ଗାଦେବୀଙ୍କ ସ୍ନେହପାଳନରେ ବଢ଼ିଥିଲେ । କାରଣ ପିତା ଶୂନ୍ୟମଣି ମହାନ୍ତି ସୁଦୂର ସୋନପୁର ଷ୍ଟେଟରେ ଅବସ୍ଥାନ କରୁଥିଲେ । ବଡ଼ଭାଇ ଗିରିଧାରୀ ମହାନ୍ତି ବି ସେହି ଷ୍ଟେଟରେ କର୍ମ କରୁଥାଆନ୍ତି । ପିତା ଥିଲେ ସ୍ପଷ୍ଟବାଦୀ ସ୍ୱାଧୀନଚେତା ଲୋକ । ସେ ପୁଣି ଥିଲେ ବ୍ରହ୍ମବାଦୀ ଯୋଗ ସାଧକ । ତେଣୁ ପର ଅଧୀନରେ ଚାକିରୀ କରି ନିଜକୁ ଚଳେଇ ନେଇ ପାରୁ ନଥିଲେ । ଏପରି ପରିସ୍ଥିତିରେ ଦୁଇଭାଇ କାହ୍ନୁଚରଣ ଏବଂ ଗୋପୀନାଥଙ୍କର ପାଠପଢ଼ାରେ ବାରମ୍ବାର ବ୍ୟାଘାତ ଘଟୁଥିଲା । ଯେତେବେଳେ ଗୋପୀନାଥଙ୍କୁ ଚାରି ପୂରି ପାଞ୍ଚବର୍ଷ ଚାଲୁଥାଏ ଏବଂ କାହ୍ନୁଚରଣଙ୍କୁ ବାରବର୍ଷ ହେବ । ଗୋପୀନାଥ ଗ୍ରାମ ଚାଟଶାଳୀରେ ପାଠ ପଢ଼ୁଥିଲେ । କୋଳପୋଛା ପୁଅ ହେଲେ ବି ସେ କେବେହେଲେ ମାଆଙ୍କର ପାଖଛଡ଼ା ହେଉନଥିଲେ । ସୌଭାଗ୍ୟକ୍ରମେ ଆମରଣ ଅର୍ଥାତ୍ ୧୯୭୩ ସାଲ ପର୍ଯ୍ୟନ୍ତ ଦୁର୍ଗାଦେବୀ ସାନପୁଅ ଗୋପୀନାଥଙ୍କ ପାଖରୁ ଦୂରରେ ରହି ନ ଥିଲେ । ବାପାଙ୍କୁ ବି ଶେଷ ଜୀବନରେ ଗୋପୀନାଥ ତାଙ୍କର ପାଖେ ପାଖେ ମଧ୍ୟ ରଖି ଆସିଥିଲେ । ଏ ସୌଭାଗ୍ୟ ତାଙ୍କର ଅନ୍ୟ

ଭୁବାସୀପୁଅମାନଙ୍କୁ ଖୁବ୍ କମ୍ ମିଳିଥିଲା । ଗୋପୀନାଥଙ୍କର ପିତା ୧୯୨୭ ସାଲରେ ସ୍ୱର୍ଗାରୋହଣ କରିଥିଲେ । ପିତା କର୍ମହୀନ, ବଡ଼ଭାଇ ପାଟନାରୁ ଅଧିକ ଟଙ୍କା ପଠାଇବାକୁ ଅକ୍ଷମ । ଏପରି ଅବସ୍ଥାରେ ପିଲାଦିନେ କାହ୍ନୁଚରଣ ଏବଂ ଗୋପୀନାଥ କପରି ପାଠ ପଢ଼ିବାକୁ ସଂଗ୍ରାମ କରିଥିଲେ, ସେଇକଥା କାହ୍ନୁବାବୁଙ୍କ ଭାଷାରେ ଏହିପରି:—

"୧୯୨୨ ସାଲର କଥା ଲେଖୁଛି । ଗାଁରେ ଥାଏ ବାପା ଓ ବୋଉଙ୍କ ପାଖରେ । ବହୁ ଚେଷ୍ଟା କଲେ ବାପା ସ୍ଥିର ଗୁଜରା ଯୋଗାଡ଼ କରିପାରିଲେ ନାହିଁ । ଭାଗ ଲାଗିଥିବା ଜମିର ଫସଲ ବାର ମାସ ଯାଏ ନାହିଁ । ଭାଇ ଯେଉଁ ଦଶଟଙ୍କା ପଠାନ୍ତି, ସେଥିରେ ଆମ ପାଠର ଖରଚ ଏବଂ ଗ୍ରାମର ଘର ଖରଚ ଚଳିବା ଯେ କେତେ କଷ୍ଟକର ସହଜରେ ଅନୁମେୟ ।

ବୋଉ ମୋର ଟିକିଏ ବଦଳିଲେନି । ବଡ଼ ଘରର ଝିଅ । ବଡ଼ ଘରର ବୋହୂ ପୁଣି ନିର୍ମାଣ ବିଭାଗର ବଡ଼ ଅଫିସରଙ୍କର ଘରଣୀ ଥିଲା । (ସ୍ୱର୍ଣ୍ଣପ୍ରସୂ ସ୍ୱର୍ଣ୍ଣପୁରରେ ସେଇଠି ତାର ଗର୍ଭରୁ କେତେଟି ପୁତ୍ରସନ୍ତାନ— ପ୍ରକୃତି ଭାଇଙ୍କ ଉପରେ ଜନମି, ତା' କୋଳରେ ଖେଳି, ଝରି, ତା ଅଗଣାରେ ଖେଳି, ଧାଇଁ ସେ ପୁରକୁ ବାହୁଡ଼ି ଯାଇଥିଲେ । ) ସେ ଗଣ୍ଡିତ ଧାନ, ମୁଗ, କୋଳଥରୁ କଣ୍ଟି କଣ୍ଟି ବନ୍ଦବସ୍ତ କରି ସିଝୁଆ କରିବାର ଅନ୍ନ ଓ ନାନାବାଳିର ବଖାଣ—ଗଉଡ଼ସାହିର ଦିବ୍ୟ ଗୁଆ ଘିଅ କିଣି ଆମକୁ ଖୁଆଏ ।

( ଆମ ଗ୍ରାମର ଗଉଡ଼ମାନେ ପ୍ରତ୍ୟହ କ୍ଷୀର ଭାର ଧରି ଆସନ୍ତି । ବ୍ୟବସାୟୀମାନଙ୍କୁ ବିକି ଦେବା ଆଗରୁ ବାହୁଡ଼ନ୍ତି । ସେମାନଙ୍କ ମଧ୍ୟରେ ଆମ ବୟସର ପିଲାଏ ବି ଥିଲେ । ସେଇମାନେ ଦେଲେ ଦୁଇଭାଇଙ୍କର ଉତ୍ସାହ ପ୍ରେରଣା ଏବଂ ଆଶାର ପ୍ରତୀକ । ସେ କଥା କହିବି ।

ଫସଲ ସରିଯାଏ । ଆଜି ଉଧାରର ପଥ ଚୁଙ୍ଗି ହୁଏ, କାରଣ ଆଗର ଉଧାର ଶୁଝା ହୋଇନାହିଁ । ଠ-ଠା-ଠି । ପୁରୁଣା କାଂସା ଓ

ଝିଙ୍କାର ଏକ ବଡ଼ ବୋଡ଼ ଥାଏ; କଂସା, ଗେଞ୍ଜି, ଗରୁ, ଭେଷ୍ଟା ଏଣ୍ଡି ଥିଲି ଟଙ୍କାରେ ବଢ଼ା ସୁଧରେ ଚୋଟିକି ଘରେ ଖୋଟିଏ କେଉଁଠି ପାହ୍ରରେ ବନ୍ଧା ପଡ଼େ ।

× × × ×

ସେହି ୧୯୨୨ ସାଲର ମଝିାମଝିଆ, ଆମେ ଦୁଇଭାଇ କଟକ ଛାଡ଼ି ଗାଁକୁ ପଳାଇ ଆସିଲୁ । ମେସ୍ ଖର୍ଚ୍ଚ ଦୁଇଜଣଙ୍କର ନଅଟଙ୍କା । ଜାଳଖିଆ କଥା ଛାଡ଼ । କିନ୍ତୁ ସ୍କୁଲ ଦରମା ଗୁରୁଟଙ୍କା । ଲୁଗାସିଆଁ, ଧୋବା, ବହିଟଙ୍କା ଏ ଚଳିବ କିପରି ? ଘରୁ ପାଞ୍ଚମାରୁ ଅଧିକ ଟଙ୍କା ପଠାଇବାକୁ ଅକ୍ଷମ । ଉପାସ୍ତ ପାଳିଲୁ । ରବିବାରେ ମେସ୍‌ରେ ନ ଖାଇ ବଜାରରୁ ଚାଉଳ ପିଠା କିଣି ଖାଉଥିଲେ ମେସ୍ ଖର୍ଚ୍ଚ କମିଯିବ । ଦୁଇ ଉପାସରେ ଚଳିବ । ଅଧା ଥାଳିପରେ ମୋଟା ରୁଟିଏ ଚଳିଲା । ତା' ସାଙ୍ଗକୁ କିଛି ପାଣି ପଡ଼ିଲାଣି । ମାଗିଲେ ଲୁଣ-ମିରି କିଛି ମିଳେ । ଦିନା କେତେ ଚଳିଲୁ ।"

(ନବରୂପ ୧୯୭୬, ପୃଷ୍ଠା ୩୪–୩୫)

ଲେଖପଢ଼ା ପାଠପଢ଼ି ବା ଆଉ କେତେଦିନ ଅବା ଚଳି ଥାଆନ୍ତା । ସ୍କୁଲରୁ ନାମ ଯାଏ ଗିନା, ଦୁଇ ଭାଇ ଆସି ଗାଁରେ ବୁଲୁଥିଲୁ । ଭାବିଥିଲେ ଦୁଇଭାଇ ଟାଟା ପଳାଇ ଯିବେ କାମ କରିବା ପାଇଁ । ମାତ୍ର ବିଧିର ବିଧାନ ଅନ୍ୟପ୍ରକାର । ହଠାତ୍ ଜୀବନର ଗତି ବଦଳିଗଲା । ଗୋପୀନାଥ ପିଲାଦିନୁ ଚଗଲା ଥିଲେ । ପାଠପଢ଼ାରେ ଆଦୌ ମନ ଦେଉ ନ ଥିଲେ । ଗାଁ ଟୋକାଙ୍କ ସାଙ୍ଗରେ ବୁଲା ବୁଲି, ବେଳ କଟିଯାଉଥିଲା ଦିନେ, ବଡ଼ଭାଇ ଅତିବିରକ୍ତ ହୋଇଗଲେ ଏବଂ ବାପାଙ୍କ ଆଗରେ ଜ୍ୟାଠାଙ୍କ ଆଗରେ କହିଲେ —'ଏଟା ନଷ୍ଟ ହୋଇଗଲା ବାପା ।'

ସେ ଦିନରୁ ହୋଇ ନଷ୍ଟ ପିଲାଟି ଆଜି ଓଡ଼ିଆ ସାହିତ୍ୟକୁ 'ଜ୍ଞାନପୀଠ'ର ସ୍ୱୀକୃତି ନେଇ ଆସିଛି । ଗୋପୀନାଥଙ୍କ ଏହି ଦିନର ସ୍ମୃତି ଲିପିବଦ୍ଧ ହୋଇଛି ତାଙ୍କ ପଦ୍ଧତି ଏବଂ ସାକ୍ଷାତକାର ରୂପକ ବିବରଣୀରେ ।

ଯେମିତି ହେଉ ପୁଅ ପାଠ ପଢ଼ିବ । × × × ସୋନପୁର ଇଷ୍ଟେଟର ପୂର୍ବ ବଜାର ପଣ୍ଡିତଙ୍କ ପ୍ରଭାବରେ ନିପୁଣ ଛାତ୍ରଙ୍କୁ ସ୍ୱୀୟ ମଣିବାକୁ ଗ୍ରହଣ କରି ନେଲେ । × ×

ସୋନପୁର ଯିବାପୂର୍ବରୁ ପୁରୀରେ ଜଗନ୍ନାଥ ଦର୍ଶନ ସାରି ବାପ ପୁଅ ଆସିଲେ ସମୁଦ୍ରକୂଳକୁ । ବେଳାଭୂମିରେ ମଥା ପିଟୁଛି ମହୋଦଧିର ଉଚ୍ଛଳ ତରଙ୍ଗମାଳା । ଗୋଧୂଳିର ରକ୍ତରାଗରେ ରଞ୍ଜିତ ବାରୁଣୀଗଣେ । ଆଖି ପାଉନାହିଁ । କାହିଁ କେତେଦୂର ! ମାଟି ଆକାଶ, ଶାନ୍ତ ଅଶାନ୍ତ, ଲୟ ବଲୟ ସବୁ ଏକାକାର ! ଉଦାସୀ ପିତା, ଜିଜ୍ଞାସୁ ପୁତ୍ର ଉଭୟ ତନ୍ମୟ । ହଠାତ୍ ବଡ଼ ଗୋଟାଏ ସମୁଦ୍ର ଲହରୀ ପାଦ ଉପରକୁ ମାଡ଼ି ଆସି ଫେରିଗଲା । ଚକ ଚକଆ ହଳଦିରଙ୍ଗର କାଠି ଖଣ୍ଡିଏ ପାଦ ପାଖରୁ ଗୋଟାଇ ଆଣିଲେ ବାପା । କାଠି ନୁହେଁ, କୋହିନୂର ପେନ୍‌ସିଲଟିଏ । ବାପାଙ୍କ ମୁହଁ ଆନନ୍ଦରେ ଉଜ୍ଜ୍ୱଳ ହୋଇ ଉଠିଲା । ପୁଅ ହାତକୁ ପେନ୍‌ସିଲଟି ବଢ଼େଇ ଦେଇ କହିଲେ, "ନେ—ଏଥର ତୋର ଅସଲ ବିଦ୍ୟାରମ୍ଭ ହେଲା । ସାଗର ଦେବତା ଏ ପେନ୍‌ସିଲଟି ତୋତେ ଉପହାର ଦେଇଛନ୍ତି ।"

[ନବପତ୍ର—୧୯୭୪ ଗୋପୀନାଥ ବିଶେଷାଙ୍କ—ପୃ. ୭-୯]

ପୁରୀର ବେଳାଭୂମିରେ ନିଜର ବାପାଙ୍କ ପାଖରେ ବିଶାଳ ସମୁଦ୍ରକୁ ସାକ୍ଷୀ ରଖି ଯେଉଁ ବାଳକ ବିଦ୍ୟାରମ୍ଭ କରିଥିଲା, ତାକୁ ଆଉ ଅଟକାଇବ କିଏ ? ଗୋପୀନାଥ ସୋନପୁରରେ ପାଠ ପଢ଼ିଲେ । ୧୯୩୦ ଖ୍ରୀଷ୍ଟାବ୍ଦରେ ପାଟଣା ବିଶ୍ୱବିଦ୍ୟାଳୟରେ ମାଟ୍ରିକ ପରୀକ୍ଷାରେ ସେ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲେ ଏବଂ ମାସକୁ କୋଡ଼ିଏଟଙ୍କା ଛାତ୍ରବୃତ୍ତି ଲାଭ କରିଥିଲେ । ୧୯୩୨ରେ ଆଇ. ଏସ. ସି. ଏବଂ ୧୯୩୪ ଖ୍ରୀଷ୍ଟାବ୍ଦରେ ବି.ଏ. ଅନର୍ସ ପରୀକ୍ଷାରେ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହେଲେ । ୧୯୩୬ ସାଲରେ ପାଟଣା ବିଶ୍ୱବିଦ୍ୟାଳୟରେ ଇଂରାଜୀ ଏମ୍. ଏ. ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରି କୃତକାର୍ଯ୍ୟ ହେଲେ ।

ଗୋପୀନାଥଙ୍କର ବ୍ୟକ୍ତିତ୍ୱ ହେଉଛି ସମୁଦ୍ର ଗର୍ଭରେ ଭାସମାନ ହିମଶୈଳର ପାହାଡ଼ ପରି । ତାହାର ଉପର ଅଂଶକୁ ଦେଖି ପୋତା ଅଂଶକୁ କଳନା କରିଯାଇ ପାରେ ନାହିଁ । ପିଲାଦିନେ ଡାଙ୍ଗରେ ପିଲଙ୍କ ସାଙ୍ଗେ ଘୁରିବୁଲି କିଏ ସେ ନଷ୍ଟ ହୋଇ ଯାଉଥିଲେ ବୋଲି ଧାରଣା ହୋଇଗଲା, ସେ ଯେ ସେକାଳର ଏକମାତ୍ର ପାଟଣା ବିଶ୍ୱବିଦ୍ୟାଳୟରେ ଇଂରେଜୀ ସାହିତ୍ୟରେ ସର୍ବୋଚ୍ଚ ପରୀକ୍ଷାରେ ଶ୍ରେଷ୍ଠ ସ୍ଥାନ ଲାଭ କରି ଗୌରବ ଅର୍ଜନ କରିବେ, ଏକଥା କିଏ ବିଶ୍ୱାସ କରିବ !! ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ପ୍ରତ୍ୟେକ ବର୍ଷ ଭଲ ଭାବ ଉତ୍ତୀର୍ଣ୍ଣ ହୋଇ ସମ୍ମାନ ଅର୍ଜନ କରୁଥିଲେ । ମାତ୍ର ଅଠର ବର୍ଷ ପରେ ଜଣେ ଅଦ୍ଭୁତକର୍ମା ସ୍ରଷ୍ଟାକୁ ବିଶ୍ୱବିଦ୍ୟାଳୟ କୋଳରେ ଧରି ରଖିପାରି ନଥିଲା । ଗୋପୀନାଥଙ୍କର ସାଧନାପୂତ ଜୀବନ ତାଙ୍କର ଶିକ୍ଷାନିକେତନକୁ ଏହି ଗୌରବରେ ମଣ୍ଡିତ କରି ପାରିଛି ।

ତୁଳସୀ ବୃକ୍ଷଟିରୁ ବାସେ । ଗୋପୀନାଥ ଏହି ବାଲ୍ୟଜୀବନରୁ ତାଙ୍କ ଜୀବନରେ ସ୍ୱାଭିମାନର ପ୍ରତିଷ୍ଠା ପାଇଁ ବ୍ୟାକୁଳ ହୋଇ ଉଠିଥିବା ଜଣାପଡ଼ୁଛି । ଏହି ଭାବରେ ଦିନେ ତାଙ୍କର ବଡ଼ଭାଇ କାହ୍ନୁଚରଣ ଲେଖନୀ ଧାରଣ କରି ଓଡ଼ିଆ ସାହିତ୍ୟର ଦାରିଦ୍ର୍ୟ ଘୁଞ୍ଚାଇବା ପାଇଁ ବଦ୍ଧପରିକର ହୋଇଥିଲେ । ତାଙ୍କରି ଭାଷାରେ—"୧୯୧୫ ସାଲର କଥା କହୁଛି । ପ୍ରାୟ ଷାଠିଏ ବର୍ଷ ତଳର, ସେତେବେଳେ ମୋତେ ନଅବର୍ଷ ହେଉଥିଲା, ଓଡ଼ିଆରେ ନଭେଲବହି ପଢ଼ିବାକୁ ଆଗ୍ରହୀ ହୋଇଥିଲି । ବହି ମିଳିଲା ନାହିଁ । ବହି ନଥିଲା । ସେହି ହତାଶା, ସେହି ଗ୍ଲାନି ମୋତେ ୧୯୨୨ରେ ନଭେଲ ଲେଖାଇଥିଲା । ତା'ପର ଇତିହାସ । ଏବଯାଏ ଚାଲିଛି ।"

(ନବପତ୍ର—୧୯୭୫ ଗୋପୀନାଥ ବିଶେଷାଙ୍କ—ପୃ ୨୭)

ଗୋପୀନାଥଙ୍କ ସୋନପୁର ଅବସ୍ଥାନ କାଳରେ ନିଜ ସ୍କୁଲର ଅଧିଷ୍ଠାତା ହେଡ଼ମାଷ୍ଟର ନରେନ୍ଦ୍ରନାଥ ରାୟଙ୍କ କନ୍ୟା ଶାନ୍ତି ସହିତ ଆତ୍ମୀୟତା ପ୍ରତିଷ୍ଠା ହୋଇଥିଲା । କୈଶୋର ଜୀବନର ହସଖେଳ ମଧ୍ୟରେ

ଗୋପୀନାଥ ମହାନ୍ତିଙ୍କୁ ସମସ୍ତେ ଔପନ୍ୟାସିକ ଏବଂ ଗାଳ୍ପିକ ଭାବରେ ଜାଣନ୍ତି । ମାତ୍ର ସେ ଜଣେ କବି । ଶତାଧିକ କବିତା ତାଙ୍କର ସାମୟିକ ପତ୍ରିକାରେ ବହୁପୂର୍ବେ ପ୍ରକାଶିତ ହୋଇଥିଲା । ସେ ନାଟକ ଲେଖିଛନ୍ତି, ଜୀବନ କାହାଣୀ ମଧ୍ୟ ପ୍ରକାଶ କରିଛନ୍ତି । ଆଦିବାସୀ ଭାଷାତତ୍ତ୍ୱ ଗବେଷଣାରେ ସେ ଜଣେ ପଣ୍ଡିତ କହିଲେ ଅତ୍ୟୁକ୍ତି ହେବ ନାହିଁ । ଗୋପୀନାଥ କେବଳ କବି ନୁହନ୍ତି, ତାଙ୍କର ବିଶାଳ ଗଦ୍ୟଲେଖାର ଛନ୍ଦେ ଛନ୍ଦେ ସଙ୍ଗୀତର ଝଙ୍କାର ଝରିପଡ଼େ । ଗଦ୍ୟ ମାଧ୍ୟମରେ ଏପରି ଇନ୍ଦ୍ରଜାଲ ସୃଷ୍ଟି ଖୁବ୍ କମ ଲେଖକ କରିପାରନ୍ତି । ଗୋପୀନାଥ ଔପନ୍ୟାସିକ ସେ ପୁଣି ବଂଶୀବାଦକ । ଜୟପୁରର ପ୍ରସିଦ୍ଧ ହାଇସ୍କୁଲର ପ୍ରଥମ ଆସିଷ୍ଟାଣ୍ଟ ହେଡମାଷ୍ଟର ନରେନ୍ଦ୍ର ବାବୁ ବଂଶୀ ବଜାଉଥିଲେ । ପିଲାବୟସରେ ଗୋପୀନାଥ ବଂଶୀବାଦନ ପ୍ରତି ଆକୃଷ୍ଟ ହୋଇଥିଲେ । ସେହିଦିନ କେତେକାଳ ଅତୀତ ହୋଇଗଲାଣି । ମାତ୍ର ଗୋପୀନାଥ ବଂଶୀର ମାୟା ତ୍ୟାଗ କରିପାରିନାହାନ୍ତି । ଜୀବନର ବାଟଘାଟରେ ଯେତେବେଳେ ଯେଉଁଠି ସୁଯୋ ପାଇଛନ୍ତି, ସେ ନାନାରଙ୍ଗର, ନାନା କିସମର ବଂଶୀ ସାଇତିବା ପା ଆଦୌ କୁଣ୍ଠିତ ହୋଇ ନାହାନ୍ତି । ଏବେ ତାଙ୍କର ବୈଠକଖାନା ବଂଶୀ ମାନଙ୍କର ଏକ ପ୍ରଦର୍ଶନୀ କହିଲେ ଅତ୍ୟୁକ୍ତି ହେବନାହିଁ । ଜୀବନର ଅଧିକାଂଶ ସମୟ ସେ ଆଦିବାସୀ ମୂଲକରେ ବିତାଇଛନ୍ତି, ଆଦିବାସୀମାନଙ୍କୁ ଆପଣା କରିଛନ୍ତି, ଆଦିବାସୀ ଭାଷାକୁ ଆୟତ୍ତ କରିଛନ୍ତି । ସେଥିପାଇଁ ଆଦିବାସୀ ଜୀବନ କାହାଣୀକୁ ରୂପାୟିତ କରିବାରେ ତାଙ୍କର ସଫଳତା ହୋ ଅନନ୍ୟସାଧାରଣ । ଏପରି ଅନ୍ତରଙ୍ଗ ଭାବରେ କେହି ଏହି ଅପାଂକ୍ତେ ୟମାନଙ୍କୁ ଦେଖିପାରି ନାହାନ୍ତି । ସେହି କାରଣରୁ ଗୋପୀନାଥଙ୍କର ନାଟ ଜୀବନରେ ତାଙ୍କର ବୈଠକଖାନାର ଆଭିଜାତ୍ୟ ବଢ଼ାଇଛନ୍ତି ବଣଘାଇ କାଠ ତିଅରି ଧୂଡୁକାବାଜା, ଆଦିବାସୀଙ୍କର ନାଉଥାଳ, ଆଉ କେ କଣ ।

ସେ କାଳରେ କୋରାପୁଟ, ଫୁଲବାଣୀ ପ୍ରଭୃତି ଅଞ୍ଚଳକୁ ସର କାରୀ ହାକିମମାନେ ବଦଳି ହୋଇଯିବାକୁ ଆଗ୍ରହୀ ହେଉ ନ ଥିଲେ । ତାହ ସେମାନଙ୍କ ପକ୍ଷରେ ଜୀବନପ୍ରତି, ଏକ ଅଭିଶାପ । କାରଣ ସେ ଶୋଷକର ଅଭିଳାଷ ମନ ନେଇ ଏଇ ଧାରା ମୂଲକରେ ପ୍ର

କରୁଥିଲେ । ତେଣୁ ତାଙ୍କ ଜନସାଧାରଣଙ୍କର ସେବକ ହେବା ପରିବର୍ତ୍ତେ ସେମାନେ ହେଉଥିଲେ ଭୀତ । ଗୋପୀନାଥ ଥିଲେ ଭିନ୍ନ ରକମର ବ୍ୟକ୍ତି । ସେ ଆଦିବାସୀଙ୍କର ଭାଇ ରୂପରେ ପ୍ରବେଶ କରିଥିଲେ ଏହି ଇଲାକାରେ । ଗୋପୀନାଥ ୧୯୩୯ ଖ୍ରୀଷ୍ଟାବ୍ଦରେ ସରକାରୀ ଶାସନ ବିଭାଗରେ ଭର୍ତ୍ତି ହୋଇଥିଲେ । ୧୯୬୪ ଖ୍ରୀଷ୍ଟାବ୍ଦବେଳକୁ ସେ କୋରାପୁଟ ଜିଲ୍ଲା ରାୟଗଡ଼ା ସବ୍‌ଡିଭିଜନରେ ଏସ୍. ଡି. ଓ ଭାବରେ କାର୍ଯ୍ୟ କରୁଥିଲେ । ଏଥିପୂର୍ବରୁ ଜୟପୁର, ମାଲକାନଗିରି ପ୍ରଭୃତି ବଣୁଆ ଅଞ୍ଚଳରେ ଦୀର୍ଘକାଳ ତହସିଲଦାର ଭାବରେ କାର୍ଯ୍ୟ କରି ଆସିଥିଲେ । ଏହି କାର୍ଯ୍ୟକାଳ ଭିତରେ ଆଦିବାସୀ ଜୀବନକୁ ଅଧ୍ୟୟନ କରିବା, ଆଦିବାସୀମାନଙ୍କୁ ଚିହ୍ନିବା ପାଇଁ ତାଙ୍କୁ ଅପୂର୍ବ ସୁଯୋଗ ମିଳିଥିଲା । ଗୋପୀନାଥ ଆଦିବାସୀ ଅଞ୍ଚଳରେ ବହୁକାଳ ଏସ୍. ଡି. ଓ. ଭାବରେ କାର୍ଯ୍ୟ କରି ଆଦିବାସୀ ଉନ୍ନୟନ ବିଭାଗର ସ୍ୱତନ୍ତ୍ର ଅଫିସର ଭାବରେ ଅବସ୍ଥାପିତ ହୋଇଥିଲେ ।

ଗୋପୀନାଥ କେବଳ ଜଣେ ସ୍ୱପ୍ନଦର୍ଶୀ ଗାଳ୍ପିକ କିମ୍ବା ଔପନ୍ୟାସିକ ନୁହଁନ୍ତି, ସେ ଏ ଜାତିର ସାଂସ୍କୃତିକ ଜୀବନର ଅନ୍ୟତମ ସାର୍ଥକ ପ୍ରବକ୍ତା । ଓଡ଼ିଶାର ଆଦିମ ସଂସ୍କୃତି ହେଉଛି ଆଦିବାସୀ ସଂସ୍କୃତି । ତେଣୁ ଓଡ଼ିଶାକୁ ଚିହ୍ନିବାପାଇଁ ହେଲେ ଆଦିବାସୀ ଜୀବନର ନାନା ବିଭାବକୁ ମଧ୍ୟ ଅଧ୍ୟୟନ କରିବା ଆବଶ୍ୟକ ।

ବଣ ମୁଲକର ହାକିମ ଭାବରେ ଗୋପୀନାଥ ଆଦିବାସୀଙ୍କର ସେବା କରିବା ପାଇଁ ପ୍ରଚୁର ସୁଯୋଗ ଲାଭ କରିଥିଲେ । ବଣ ଜଙ୍ଗଲର ଶାନ୍ତ ନିବିଡ଼ ଏହି ଜାତିର କଳା, ସାହିତ୍ୟ, ଧର୍ମ ଧାରଣା, ତନ୍ତ୍ର, ମନ୍ତ୍ର ଓ ଓ ଉନ୍ନତ ଜୀବନ ଦର୍ଶନ ତାଙ୍କୁ ଗଭୀର ଭାବରେ ଅନୁପ୍ରାଣିତ କରିଥିଲା । ଯେଉଁମାନଙ୍କୁ ସଭ୍ୟ ସମାଜର ଲୋକେ ଅସଭ୍ୟ, ଲଙ୍ଗଳା ଏବଂ ବଣୁଆ ବୋଲି କହି ଏଡ଼ାଇ ଚାଲନ୍ତି, ସୁଯୋଗ ଦେଖି ସେମାନଙ୍କୁ ନିର୍ମମ ଭାବରେ ଶୋଷଣ କରି ତଳାତଳାନ୍ତ କରି ଦିଅନ୍ତି, ସେହିମାନଙ୍କର ଜୀବନରେ ଅପୂର୍ବ ଆନନ୍ଦର ସନ୍ଧାନ କଲେ ଗୋପୀନାଥ । ତେଣୁ ଗୋପୀନାଥ ନିଜେ

କେବଳ ଉଦ୍‌ବୁଦ୍ଧ ହେଲେ ନାହିଁ, ତାଙ୍କର ଲେଖାମାନରୁ ଯେଉଁ ଉଦ୍ୟୋଗୀଙ୍କ ଶକ୍ତିଶାଳୀ ଜୀବନବେଦଗୁଡ଼ିକ ଆତ୍ମପ୍ରକାଶ କଲା, ଭାରତୀୟ ସାହିତ୍ୟରେ ତାହା ହେଲା ସର୍ବଯୁଗମୟୀ ସୌନ୍ଦର୍ଯ୍ୟର ଅଧିକାରୀ । ସେ କାଳଜୟୀ ଭାବନାକୁ ଲିପିବଦ୍ଧ କରିଛନ୍ତି ନିଜର ଉପନ୍ୟାସ ଗୁଡ଼ିକରେ ।

ଜଣେ ଆଲୋଚକ ଯଥାର୍ଥରେ କହିଛନ୍ତି—ଗୋପୀନାଥଙ୍କର ଜୀବନ ହେଉଛି ସ୍ନେହସାଉଁଟାର ଜୀବନ । ସେ କେବଳ ଦିନାଜ ବଣ ମୂଲକର ପରଜା, ଦାଦିବୁଢ଼ା, ଅମୃତସନ୍ତାନଙ୍କୁ ଦୁନିଆ ଦରବାରରେ ପ୍ରତିଷ୍ଠିତ କରି ଦେଇ ନାହାଁନ୍ତି, ଆଶୁକବି ବିଷ୍ଣୁପ୍ରସାଦଙ୍କୁ ସେ ଆବିଷ୍କାର କରିଛନ୍ତି । ବିଷ୍ଣୁପ୍ରସାଦ ଖୋରଧା ପାଖରେ କୌଣସି ଅନାମଧେୟ ପଲ୍ଲୀର ଅଧିବାସୀ । କିନ୍ତୁ ଐଶ୍ୱରିକ ଶକ୍ତିବଳରେ ରାଶି ରାଶି କବିତା ସେ ଯୋଡ଼ି ଯାଆନ୍ତି । କିନ୍ତୁ ଲେଖି ରଖିବା ତାଙ୍କର ଅଭ୍ୟାସ ନ ଥିଲା । ଗୋପୀନାଥ ଏହି କବିତା ଶୁଣି ତନ୍ମୟ ହୋଇ ପଡ଼ିଲେ । ଗୋପୀନାଥ ତାଙ୍କର ମୁହଁର କବିତାକୁ କେତେକ ପରିମାଣରେ ସାଉଁଟି ଆଣିଲେ । ସୁଖର କଥା, ଏହି କବିଙ୍କର କେତେକ କବିତା ପୁସ୍ତକାକାରରେ ପ୍ରକାଶିତ ହୋଇଛି । ସେହିପରି ଆଉ ଗୋପୀନାଥଙ୍କର ଆବିଷ୍କାରର ଏକ ବିସ୍ମୟଜନକ ବ୍ୟକ୍ତିତ୍ୱ ହେଲେ ବ୍ରହ୍ମପୁରର କବି ଖଗେଶ୍ୱର ସେଠୀ । ଏହି ଖଗେଶ୍ୱରଙ୍କର ପେଶା ଥିଲା ମୁଢ଼ି ଭଜା ହାଟରେ ବିକି ଚଳିବା । ଦାରିଦ୍ର୍ୟର ସୀମାରେଖା ତଳେ ଅତି ନିର୍ମମ ଭାବରେ ଜର୍ଜରିତ ଏହି ବୃଦ୍ଧ ଯେ କବିତା ରଚନା କରିପାରନ୍ତି, ତାହା ଗୋପୀନାଥଙ୍କର କର୍ଣ୍ଣଗୋଚର ହେଲା । ସେ ସରକାରୀ ଗସ୍ତରେ ଯାଇ ଏହି ବ୍ୟକ୍ତିତ୍ୱ ଅକସ୍ମାତ୍ ଭାବରେ ଆବିଷ୍କାର କଲେ ଏବଂ ତାଙ୍କର କବି ପ୍ରତିଭା ହୃଦୟଙ୍ଗମ କରି ବିମୁଗ୍ଧ ହୋଇଗଲେ । ଅତ୍ୟନ୍ତ ଦୁଃଖର କଥା ଯେ ଓଡ଼ିଆ ସାହିତ୍ୟ ଏକାଡେମୀ ଖଗେଶ୍ୱରଙ୍କର ସମ୍ପୂର୍ଣ୍ଣ ଗ୍ରନ୍ଥାବଳୀ ପ୍ରକାଶ କରିଛନ୍ତି । ସେହିପରି ଗୋପୀନାଥଙ୍କର ଆଉ ଜଣେ ଆବିଷ୍କାର ହେଲେ ବୁର୍ଲେଣ୍ଡ୍ରର ମାଣ୍ଡାଙ୍ଗି ଭକତ ଜୋର । ସେ କେବଳ କବି କିମ୍ବା ନାଟ୍ୟକାର ନୁହଁନ୍ତି, ଜଣେ ମହାନ ବିପ୍ଳବୀ । ପ୍ରତିକ୍ରିୟାଶୀଳ ଲୋକମାନଙ୍କ ଚକ୍ରାନ୍ତରେ ଜେଲବରଣ କରି ପରିଶେଷରେ ସେ ମୃତ୍ୟୁବରଣ କରିଛନ୍ତି । ମାତ୍ର ତାଙ୍କର

ଅପ୍ରକାଶିତ ଲେଖାଗୁଡ଼ିକ ସେହି ଆଗ୍ନେୟ ମନର ପରିଚୟ ବହନ କରି ଆସିଛି । ସେଗୁଡ଼ିକ ପ୍ରକାଶିତ ହେଲେ ଓଡ଼ିଆ ସାହିତ୍ୟରେ ଏକ ରହସ୍ୟ-ବ୍ୟଞ୍ଜିତ ବ୍ୟକ୍ତିତ୍ୱର ଉଦ୍‌ଘାଟନ ହୋଇ ପାରିବ ।

୧୯୪୦ ଖ୍ରୀଷ୍ଟାବ୍ଦରେ ଗୋପୀନାଥଙ୍କର ପ୍ରଥମ ଉପନ୍ୟାସ 'ମନଗହିରର ଚାଷ' ପ୍ରକାଶ ହେଲା । ୧୯୪୪ ଖ୍ରୀଷ୍ଟାବ୍ଦରେ ଆମ୍ଭ ପ୍ରକାଶ କଲୁ ବିଖ୍ୟାତ ଉପନ୍ୟାସ 'ଦାଦିବୁଢ଼ା' । ଗୋପୀନାଥଙ୍କର ଅନବକଶିତ ଔପନ୍ୟାସିକ ପ୍ରତିଭା 'ପରଜା' ଉପନ୍ୟାସରେ ନିଜର ଯୌବନ ସୁଲଭ ଔଦାର୍ଯ୍ୟ ଓ ମହିମା ନେଇ ପ୍ରତିଭାତ ହେଲା ୧୯୪୫ ଖ୍ରୀଷ୍ଟାବ୍ଦରେ । ପରଜାଠାରୁ ମାଟିମଟାଳ ଯାଏଁ ଅନେକ ଗଳ୍ପ ଓ ଉପନ୍ୟାସ ପ୍ରକାଶିତ ହୋଇ ଗୋପୀନାଥଙ୍କୁ ଏ ଦେଶର ବହୁ ସମ୍ମାନ ଓ ଐଶ୍ୱର୍ଯ୍ୟ ବହନ କରି ଆଣିଥିଲେହେଁ ଗୋପୀନାଥଙ୍କୁ "ପରଜା" ଉପନ୍ୟାସ ଯେ ଏ ଦେଶର ମାନସ ରାଜ୍ୟରେ ପ୍ରଥମ ସ୍ୱୀକୃତି ଆଣି ଦେଇଛି, ତାହା ଅସ୍ୱୀକାର କରିପାର ଯାଇବ ନାହିଁ । 'ପରଜା' ପରି ଏକ ଉପନ୍ୟାସ ସମକାଳୀନ ଭାରତୀୟ ସାହିତ୍ୟରେ ଆଦୌ ରଚିତ ହୋଇ ନଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ପରଜାର ବହୁକାଳ ପୂର୍ବରୁ ଓଡ଼ିଆ ସାହିତ୍ୟରେ ଗୋପାଳ [illegible] 'ଭୀମାଭୁୟାଁ' ଉପନ୍ୟାସରେ ଆଦିବାସୀ କାହାଣୀ ବର୍ଣ୍ଣନା କରିବା ଅବଶ୍ୟ ଚେଷ୍ଟା କରିଥିଲେ । ମାତ୍ର ଏହି ଉଭୟ ଉପନ୍ୟାସ ମଧ୍ୟରେ କାଳଗତି ବ୍ୟବଧାନ ଯେପରି ପ୍ରଚୁର, ରସଗତ ଓ ଆଦର୍ଶଗତ ପାର୍ଥକ୍ୟ ମଧ୍ୟ ସେହିପରି ଆକାଶ ପାତାଳ ପରି ମନେ ହୋଇଥାଏ ।

'ପରଜା' ଉପନ୍ୟାସ ହେଉଛି ପରଜା ଜାତିର ପ୍ରଥମ ଜୀବନ-ବେଦ; ଆଦିବାସୀ ସମାଜର ଅତ୍ୟନ୍ତ ଶକ୍ତିଶାଳୀ ଚରିତ୍ରଧର୍ମୀ ସାହିତ୍ୟକୃତି ; ଜୀବନକୁ ଜୀବନ ଭାବରେ ଉପଭୋଗ କରିବା ପାଇଁ ସେ ପରଜା ଜୀବନରେ ଦେଇଛନ୍ତି ଅମୃତର ସନ୍ଧାନ । ତେଣୁ ଗୋତିପ୍ରଥାର ନିର୍ଯ୍ୟାତନା ମଧ୍ୟରେ ପରଜା ସ୍ୱପ୍ନ ଦେଖେ । ଭବିଷ୍ୟତର ରଙ୍ଗୀନ ସ୍ୱପ୍ନରେ ମସଗୁଲ ହୁଏ ; କେତେବେଳେ ଅଗ୍ନନକ ଗୋତିପ୍ରଥା ଆସେ, ସାଉକାରର ଅତ୍ୟାଚାରରେ

ସେ ସୃଷ୍ଟି କରିଛନ୍ତି । ମାତ୍ର ସେଥିପାଇଁ ପରଜା ଚରିତ୍ରମାନେ ନାହିଁ । ଯୁଗ ଯୁଗର ଅବହେଳିତ, ଉପେକ୍ଷିତ ପରଜା ଜାତିକୁ ଗୋପୀନାଥ ସାହିତ୍ୟ ମାଧ୍ୟମରେ ପ୍ରତିଷ୍ଠିତ କରିଛନ୍ତି, ତାହାର ଦୁଃଖୀଆ ଜୀବନରେ ଆଘାତ ଦେଇ ଚିରଜାଗ୍ରତ କରିଛନ୍ତି । ସରଳ ବିଶ୍ୱାସୀ ପରଜା ନିଜର ଚଳଣିରେ ସର୍ବଦା ଖୁସି ଖୁସି ହୋଇଥାଏ । ସେ ଭଲପାଏ ତାର ବଣ ଜଙ୍ଗଲ, ପାହାଡ଼ ପର୍ବତ ଘେରା ମୁଲକକୁ । ସେଇଠି ସେ ତାର ମାଟି ମାଆକୁ ଭଲ ପାଏ । ଜୀବନକୁ ସମ୍ଭୋଗ କରିବା ହେଲା ତାର ଲକ୍ଷ୍ୟ, ସେ ଆଧୁନିକତାର ଛଳନାରେ ବିଚଳିତ ହୁଏ ନାହିଁ । ପାହାଡ଼ କୋଳରେ ସେ ଜନ୍ମଗ୍ରହଣ କରେ, ସେଇଠି ସାରାଜୀବନର ଲୀଳାଖେଳା ସାରି ସେ ମାଟିରେ ମିଶିଯାଏ । ଦେଶୀଆ ମହାଜନ ଲୋକର ବାଦ କଥା ସେ ବୁଝିବାକୁ ଚେଷ୍ଟା କରେ ନାହିଁ । ତାର ସରଳ ମନର ସୁଯୋଗ ଗ୍ରହଣ କରି ସଭ୍ୟ ଲୋକେ ତାକୁ ବହୁଭାବରେ କଷ୍ଟ ଦାନ କରିଛନ୍ତି । ତଥାପି ପାହାଡ଼ିଆ ମନୁଷ୍ୟ ହାର ମାନେ ନାହିଁ । ନୈରାଶ୍ୟ ତାର ଜୀବନକୁ ଛୁଏଁ ନାହିଁ । ସେ ଠିକ୍ ବଣ ମୂଲକରେ ପାହାଡ଼ିଆ ଝରଣା ପରି । ସର୍ବଦା କଳ କଳ ଛଳ ଛଳ ସଙ୍ଗୀତରେ ଆତ୍ମହରା ହୋଇ ଗତିଶୀଳ । ଗୋପୀନାଥ ଲେଖିଛନ୍ତି ପରଜାରେ—"ବାଘ ଶିକାର ଖୋଜି ବୁଲେ, ଚିଲ ଚଢ଼େଇ ଖୋଜି ବୁଲେ । ମଣିଷ ଖୋଜି ଖୋଜି ବୁଲେ ବଣ ଜଙ୍ଗଲ ଭିତରେ କନ୍ଦାମୂଳ ଆଉ ଶାଗ ପତର । ସାହୁକାର ଟଙ୍କା ଦେଇ ଖୋଜେ ମଣିଷ ।" ସେଇ ସାହୁକାରକୁ ପରଜା ଡରେ । "ଦେଶୀଆ ଲୋକ ଧର୍ମକୁ ଡରେ । ସାହୁକାରକୁ ଡରେ । ଉଭୟ ଡର ଭିତରେ ପଡ଼ି ମୁଣ୍ଡ ତାର ଗୋଳମାଳ ହୋଇଯାଏ ।" ଗୋଟି ଖଟାଇ ସାହୁକାର କାହାର ଜମି ଦଖଲ କରେ । କାହାର ମୁଣ୍ଡ ଫଟାଏ, କାହାର କରେ ସତ୍ୟାନାଶ । ପରଜାର ଧନ ଜମି, ଇଜ୍ଜତ ସାହୁକାର ହାତରେ ବନ୍ଧା ପଡ଼େ । ପରଜା ଦଳି ଦଳାନ୍ତ ହେଉଥାଏ, ସାହୁକାରର ସୌଭାଗ୍ୟ ବଢ଼ି ଚାଲିଥାଏ । କିନ୍ତୁ ପରିଶେଷରେ ପରଜା ଲୋକର କୁରାଢ଼ୀ ଦାଡ଼ରେ ସାହୁକାରର ମୁଣ୍ଡ ଗଡ଼ିଯାଏ । ପରଜା ଉପନ୍ୟାସରେ ଗୋପୀନାଥ ମୋଟାମୋଟି ଭାବରେ ମାଟିର ମୋହ ପାଇଁ ମଣିଷର ବିକଳ ଅବସ୍ଥା ବର୍ଣ୍ଣନା କରିଛନ୍ତି । ସାହୁକାର ସମ୍ପତ୍ତି ନିଶାରେ

ପାରନ୍ତି । ପରଜା ମଧ୍ୟ ଜମିର ଅଧିକାର ଛାଡ଼ିବା ପାଇଁ ରାଜି ହୋଇନାହାନ୍ତି ଶେଷ ପର୍ଯ୍ୟନ୍ତ । ମାଟି ମଣିଷର ମୂଳ । ମଣିଷ ହେଉଛି ମାଟିର । ସତେ ଯେପରି ମଣିଷର ମୁଠା ଭିତରେ ଥାଇ ମାଟି ହସୁଥାଏ । ଅପେକ୍ଷା କରିଥାଏ, ମାଟି କେତେବେଳେ ଛାଡ଼ିବ, ସେଇ ମାଟିରେ ସେ ପୁଣି ମିଶିଯିବ ଚିରକାଳ ପାଇଁ । ୧୯୪୯ ସାଲରେ ଗୋପୀନାଥଙ୍କ 'ଅମୃତ ସନ୍ତାନ' ପ୍ରକାଶିତ ହୋଇଥିଲା । 'ପରଜା' ଉପନ୍ୟାସରେ ପରଜା ସମ୍ପ୍ରଦାୟର ଚରିତ୍ର ଚିତ୍ରଣ କଲାପରେ ଅମୃତ ସନ୍ତାନରେ ଲେଖକ କନ୍ଧ ସମ୍ପ୍ରଦାୟକୁ ଗ୍ରହଣ କରିଛନ୍ତି । ଆଦିବାସୀ ଜୀବନର ଜୀବନ୍ତ ରୂପାୟନ ଏଥିରେ ସମ୍ଭବ ହୋଇଛି । କୋରାପୁଟ ଜିଲାର ବଣୁଆ ଅଞ୍ଚଳରେ ଏଇ ଆଦିମ ଜାତି କିପରି ଚଳ-ପ୍ରଚଳ ହୁଅନ୍ତି, ଗୋପୀନାଥଙ୍କ ଉପନ୍ୟାସ ପ୍ରକାଶିତ ନ ହେବା ପର୍ଯ୍ୟନ୍ତ ଓଡ଼ିଶାର ସଭ୍ୟ ଶିକ୍ଷିତ ଲୋକେ କ୍ୱଚିତ ଏ ସବୁ ଜାଣିବାକୁ ପାଉଥିଲେ । ତେବେ ଗୋପୀନାଥ କେବଳ ଜଣେ ସାମ୍ବାଦିକ ଅଥବା ଫଟୋଗ୍ରାଫର ହୋଇନାହାନ୍ତି ତାଙ୍କର ଜୀବନଜିଜ୍ଞାସା ଏବଂ ଅନୁସନ୍ଧିତ୍ସା ଅତ୍ୟନ୍ତ ସୁଦୂର ପ୍ରସାରୀ । ବଣୁଆ କନ୍ଧର ଜୀବନ ଦର୍ଶନ ହେଲା—"ଜୀବନ ସତ୍ୟ, ଜୀବନ ସୁନ୍ଦର ପୁରୁଣା ଦେହଟା ଗଲେ ଯାଉ ପଛେ ପୁଣି ଜନ୍ମ ହେବରେ ଏହି ସୁନ୍ଦର ପୃଥିବୀରେ ।" ପର୍ବତ ଉପରେ କନ୍ଧର ଘର । ତଳେ ଯେଉଁ କ୍ଷେତକୁ ସବୁଦିନିଆ କରି ଛାଡ଼ି ଦେଇ ଯାଉଛି, ସେ ସବୁ ପରର । ଧୀରେ ଧୀରେ ସାଉକାର ଆସୁଛନ୍ତି, ନିଜର ଅଧିକାର ଜାହିର କରୁଛନ୍ତି । ଶୁଣ୍ଡି, ବ୍ରାହ୍ମଣ ତେଲେଙ୍ଗା ସାଉକାରମାନେ ସଭ୍ୟତାର ଉତ୍ତୁଙ୍ଗ ଢେଉ ପରି କନ୍ଧ ଦେଶକୁ ଦିନେ ଆସିଥିଲେ । ଆଜି ସେମାନେ ଚାରି କୋଶ କୋଶ ଲମ୍ବି ଯାଇଥିବା ଧାନକ୍ଷେତର ମାଲିକ ହୋଇ ବସିଛନ୍ତି । ଦିନେ ଲୋଟା କମ୍ବଳ ଧରି ସେମାନେ ବଣ ଭିତରେ ପଶିଥିଲେ । ବର୍ତ୍ତମାନ ସେଠାରେ ମାଲିକ ହୋଇ କନ୍ଧମାନଙ୍କୁ ଶୋଷଣ କରୁଛନ୍ତି । ଗୋପୀନାଥ ଲେଖିଛନ୍ତି—

"କନ୍ଧ କ୍ଷେତ ତିଆରି କରେ । ପଛେ ପଛେ ସଭ୍ୟତା ଆସେ । ସାହୁକାର ଆସେ । ଧୋବଧାଉଳିଆ ଆସନ୍ତି; ଦେଖନ୍ତି ଭଲ ଜମି, ସେତକ ହାତ କରନ୍ତି । କନ୍ଧ ଚଢ଼େ ଉପରକୁ । ତେଣୁ ଯେଉଁଠି ବଣ, ସେଠି କନ୍ଧ । ଜାଗା ଖୋଲିଗଲେ କନ୍ଧ ତଡ଼ା ହୋଇଯାଏ ।

"ସାହୁକାର ମହାଜନ ଲୋକମାନେ ଆସି ଜଙ୍ଗଲରେ ପଶୁଛନ୍ତି, ବେପାର ତାର ବଢ଼ିବାରେ ଲାଗିଛି । ଶୋଷିବା ତାର କାମ । କନ୍ଧର ଧନ କନ୍ଧକୁ କଢ଼ାଇ ନେଉଛି ସେମାନେ ସୁଧ ଖାଉଛନ୍ତି । କନ୍ଧ ତାଙ୍କର ଗୋତି ହୋଇ ଯାଉଛନ୍ତି, ପେଟକୁ କମଣି ଜୁଟୁଛି । ନିଜ ଜମିରେ ସେ ହୋଇଛନ୍ତି ଚାକର । "ତେଣୁ ଫସଲ ଉପୁଜାଇବା ତାର କାମ । ଫସଲର ମାଲିକ ସାହୁକାର ।"

ଗୋପୀବାବୁଙ୍କ ଲେଖାରେ ବିପ୍ଳବର ସଙ୍କେତ । ଏପରି ମନେହୁଏ ଭିତରେ ଆଦିବାସୀ ଜୀବନର ବାସ୍ତବ ଜୀବନକୁ ଲେଖକ କେବଳ ପ୍ରକାଶ କରିନାହାଁନ୍ତି, ସେ ସେମାନଙ୍କ ମନରେ ବିପ୍ଳବର ଧ୍ୱନି ଶୁଣାଉଛନ୍ତି । ସ୍ୱାଧୀନତାର ଊର୍ଦ୍ଧ୍ୱ ତିନିଦଶନ୍ଧିପରେ ଆଜି ସେହି ବାଣୀ ଖଡ଼ିଆଠାରୁ ଆସାମ ପର୍ଯ୍ୟନ୍ତ, ଫୁଲବାଣୀଠାରୁ ମୟୂରଭଞ୍ଜ ପର୍ଯ୍ୟନ୍ତ ବଣୁଆ ଅଞ୍ଚଳରେ ଶୁଣିବାକୁ ମିଳୁଛି । ସେମାନେ ଆଜି ଜାଗ୍ରତ । ବଣୁଆଲୋକେ ଆଜି ସଚେତନ । ଏହି ଆଦିମ, ପ୍ରାଚୀନ ସଭ୍ୟ ଅଥଚ ବର୍ତ୍ତମାନର ବଣୁଆ ଜାତିର ମହାନ ମାନ୍ତ୍ରିକ ହୋଇଛନ୍ତି ଗୋପୀନାଥ ।

ଅନ୍ୟ ପାଞ୍ଚଜଣ ଲେଖକଙ୍କପରି ଗୋପୀନାଥ ଲେଖନ୍ତି ନାହିଁ । ତାଙ୍କୁ ଲେଖା ମାଡ଼ିଲେ ସେ ଲେଖନ୍ତି । କିଛି କହିବାର ଥିଲେ ସେ ଲେଖଣୀ ଧରି ବସନ୍ତି । ତେଣୁ ସଂଖ୍ୟା ଦୃଷ୍ଟିରୁ ତାଙ୍କର ସୃଷ୍ଟି ସମ୍ଭାର ଅଳ୍ପ, ଅଥଚ ଆକାର ଓ ଗୁଣାତ୍ମକ ଦୃଷ୍ଟିରେ ତାହା ଅତ୍ୟନ୍ତ ମହାନ ଓ ବିଶାଳ । ତାଙ୍କର ଉପନ୍ୟାସଗୁଡ଼ିକରେ ଆଦିବାସୀ, ହରିଜନ ପ୍ରଭୃତି ଏକ ବିରାଟ ଅବହେଳିତ ସଂପ୍ରଦାୟର ଜୀବନ ରହସ୍ୟକୁ ସେ ଉଦ୍‌ଘାଟିତ କରି ସ୍ମରଣୀୟ ହୋଇଅଛନ୍ତି । ମଣିଷ, ତାର ସମାଜ, ତାର ଜୀବନର ସୁଖଦୁଃଖ ପାଇଁ ଲେଖକଙ୍କର ଦରଦ ଅପରିସୀମ । କାଳକାଳ ଧରି ଏହି ଉତ୍ପୀଡ଼ିତ ସମାଜର ବେଦନାବୋଧ କାହାରି ଦୃଷ୍ଟିରେ ପଡୁ ନଥିଲେ । ସଭ୍ୟସମାଜର ଲୋକେ ସେମାନଙ୍କଠାରୁ ସର୍ବଦା କରଚଢ଼ା ଦେଇ ରହୁଥିଲେ । ଗୋପୀନାଥ ସେମାନଙ୍କ ଭିତରେ ପ୍ରବେଶ କରି ଜଣେ ହୋଇଗଲେ ଏବଂ ସେହିମାନଙ୍କର ଭିତରରୁ ପ୍ରତିଜନଧ୍ୱନି କଳିଭଳି ସମସ୍ତ କଥା ସଭ୍ୟ ସମାଜ ଆଗରେ

ଉଦ୍‌ଘାଟନ କରିଗଲେ । ଗୋପୀନାଥ ସମ୍ପର୍କ ମଧ୍ୟ କହିଦେଇଛନ୍ତି ଜନକ ଦ୍ରଷ୍ଟା ହିଁ, ଆଉ ଅଧିକ ଦିନ ଅବହେଳା, ଅଣଦେଖା କଲେ ବଣୁଆ ମୂଳକର କୁବୁର୍ଗା ଦାଢ଼ରୁ ରକ୍ଷା ପାଇବା ଅସମ୍ଭବ । ପରଜା ଓ ଅମୃତର ସନ୍ତାନ ପରି 'ଅପହଞ୍ଚ' ଓ 'ଶିବଭାଇ' ପରି ପୂର୍ବ ଉପନ୍ୟାସରେ ଲେଖକ ଗୋପୀନାଥ ହେଉ ବଣୁଆ ଜୀବନର ସୌନ୍ଦର୍ଯ୍ୟ ଉନ୍ମୋଚନ କରିବା ପାଇଁ ଚେଷ୍ଟିତ ହୋଇଛନ୍ତି । ଦାଦିବୁଢ଼ା ଓ ଦାନାପାଣି ଗୋପୀନାଥଙ୍କର ଭିନ୍ନ ସ୍ୱାଦର ଉପନ୍ୟାସ । ଏଥିରେ ନାଗରିକ ଜୀବନର ଆଲେଖ୍ୟ ଦେଖିବାକୁ ମିଳେ । ଯେଉଁ ଜୀବନରେ ଚଳପଥରେ ବନ୍ଧନ, କପଟର ରହସ୍ୟ ଏବଂ ନାନା-ଭଳି ସମସ୍ୟାର ସମ୍ମୁଖୀନ ହୋଇଛନ୍ତି । ତାହାକୁ ଉଦ୍ଧାର ନିଷ୍ଠାର ସେ କରିଛନ୍ତି । ଅନଲ ହରିଦା । ଏ ହେଲା ବାସ୍ତବଧର୍ମୀ ଉପନ୍ୟାସ । ଆଧୁନିକ ସମାଜରେ ଶ୍ରେଣୀସଂଘର୍ଷ, ମାନବୀୟ ମୂଲ୍ୟବୋଧର ଅଭାବ ଏବଂ ଅବକ୍ଷୟ ଚିନ୍ତାଧାରାର ପ୍ରତିଫଳନ ଏହି ଉପନ୍ୟାସ ଦ୍ୱୟରେ ସଫଳ ଭାବରେ ରୂପାୟିତ । ମାଟି ମଟାଳ ଗୋପୀନାଥଙ୍କର ବିଶାଳ ଏବଂ ମହନୀୟ କୃତି । ଭାରତୀୟ ଜ୍ଞାନପୀଠ ଏହି ପୁସ୍ତକପାଇଁ ଗୋପୀନାଥଙ୍କୁ ସମ୍ମାନିତ କରିବା ସଙ୍ଗେ ସଙ୍ଗେ ଓଡ଼ିଆ ସାହିତ୍ୟକୁ ଭାରତୀୟ ସାମ୍ପ୍ରତିକ ସମାଜରେ ସ୍ୱୀକୃତି ପ୍ରଦାନ କରିଛନ୍ତି । ତେଣୁ 'ମାଟିମଟାଳ' ସମଗ୍ର ଓଡ଼ିଆ ସାହିତ୍ୟର ଏବଂ ଓଡ଼ିଆ ଜାତିର ଗୌରବ । ଭାରତ ଏକ ଗ୍ରାମବହୁଳ ଦେଶ । ପଲ୍ଲୀ ସମସ୍ୟା ହିଁ ଏ ଦେଶର ମୂଳଭିତ୍ତି । ଲେଖକ ସ୍ୱୀୟ ଉଦାର ଦୃଷ୍ଟିରେ ପଲ୍ଲୀ ଜୀବନକୁ ଏହି ବିଶାଳ ଉପନ୍ୟାସରେ ଚିତ୍ରାଙ୍କନ କରିଛନ୍ତି ।

ଗୋପୀନାଥଙ୍କର ପ୍ରତ୍ୟେକ ଲେଖାର ଆଲୋଚନା ପାଇଁ ଏଠାରେ ଅବକାଶ ନାହିଁ । ମାତ୍ର ତାଙ୍କର ଲେଖାଗୁଡ଼ିକ ପାଠକଲେ ପାଠକ ସମ୍ମୋହିତ ହୋଇଯାଏ । ତାଙ୍କ ଉପନ୍ୟାସ ସମ୍ଭାରରେ ସେ ନିଜେ କେଉଁଠି ଜାହିର କରି ନାହାଁନ୍ତି, ତାଙ୍କର ପାଣ୍ଡିତ୍ୟ, ବହୁଧାଚିନ୍ତା କିମ୍ବା ଉଦ୍‌ଭ୍ରାନ୍ତ ଜୀବନ ଦର୍ଶନ ପାଠକ ପ୍ରାଣରେ ଚାପି ଦେଇ ନାହାଁନ୍ତି । ଗୋପୀନାଥଙ୍କ ପ୍ରତିଭା ଓ ବ୍ୟକ୍ତିତ୍ୱର ତାହାହିଁ ବୋଧହୁଏ ସ୍ୱାତନ୍ତ୍ର୍ୟ । ସମକାଳୀନ ଓଡ଼ିଶାକୁ ଜାଣିବାକୁ ହେଲେ ଗୋପୀନାଥଙ୍କୁ ହିଁ ପଢ଼ିବାକୁ ହେବ । ଗୋପୀନାଥ ନିଜକୁ ନାୟକ

ଅନେକର ଉପନ୍ୟାସ ଲେଖାରେ ହାତ ଦେଇ ନାହାଁନ୍ତି । ସେ ହୋଇଛନ୍ତି ଏକ ଅଦୃଶ୍ୟ ଶକ୍ତି । ପ୍ରତ୍ୟେକ ଚରିତ୍ରର ପାଖେ ପାଖେ ରହି ତାର କାନରେ ମନ୍ତ୍ର ଫୁଙ୍କିଛନ୍ତି, ପାଟିରେ କଥା କୁହାଇଛନ୍ତି । ମୁହଁରେ ହସ ଉକୁଟାଇଛନ୍ତି । ତାଙ୍କର ଅଧିକାଂଶ ଉପନ୍ୟାସ ଗୋଟିଏ ଗୋଟିଏ ଗଦ୍ୟ-କାବ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଶେଷ କଥା ହେଲା, ଗୋପୀନାଥ ଯାହା ଯେଉଁଠି ଲେଖିଥାଆନ୍ତୁ ନା କାହିଁକି, ସେ ସବନ୍ତ ଏହି ମରଣଶୀଳ ସଂସାରରେ ମୃତ୍ୟୁକୁ ମୁକାବିଲା କରିବା ପାଇଁ ଶିକ୍ଷା ଦେଇଛନ୍ତି । ଅଶ୍ରୁଳ ପୀଡ଼ିତ ଜୀବନର ଅଧ୍ୟାୟ ତାଙ୍କ ଲେଖନୀରେ ମୂକୁଳା ହୋଇ ଯାଇଛି, ମାତ୍ର ସେଥିରେ ସେ ଭାଙ୍ଗି ଯାଇ ନାହାଁନ୍ତି, ଅଟକି ରହିବା ପାଇଁ, ନିରସ୍ତ ହେବାପାଇଁ ପ୍ରୟାସ କରି ନାହାଁନ୍ତି । ଜୀବନରେ ଆନନ୍ଦକୁ ବାଦ ଦେଇ ମଣିଷ ବଞ୍ଚିପାରିବେ ନାହିଁ । ଅଶ୍ରୁର ଅନ୍ତରାଳରେ ହସ ଉକୁଟାଇବାହିଁ ଗୋପୀନାଥଙ୍କ ଉପନ୍ୟାସର ପ୍ରାଣଧର୍ମ । ଜୀବନରେ ଆନନ୍ଦ ଅଛି, ରସ ଅଛି, ମଉଜ ଅଛି । ଜୀବନକୁ ଉପଭୋଗ କର, ସୁନ୍ଦର କର, ଶାଣିତ କର, ସୁଖମୟ କର—ଏହାହିଁ ହେଲା ଗୋପୀନାଥଙ୍କର ବାଣୀ । ତେଣୁ କଥା-ସମ୍ରାଟ ଗୋପୀନାଥ ଓଡ଼ିଆ ସାହିତ୍ୟରେ ଚିରଦିନ ଅତୁଳ ଏବଂ ଅଳିଭା ହୋଇ ରହିବେ, ପ୍ରେରଣା ଦେଉଥିବେ ।



# ଶିଳ୍ପୀ ବିପିନବିହାରୀ ଚୌଧୁରୀ

ଶ୍ରୀ ଯଚମେଶ୍ୱର ତ୍ରିପାଠୀ

ଜୀବନରେ ଅସୁବିଧାକୁ ଅତିକ୍ରମ କରି ଯେଉଁମାନେ ନିଜ ଚେଷ୍ଟାରେ ସମାଜରେ ପ୍ରତିଷ୍ଠିତ ହୋଇ ପାରନ୍ତି ସେମାନଙ୍କ ଭିତରେ ଶିଳ୍ପୀ ବିପିନ ବିହାରୀ ଚୌଧୁରୀଙ୍କ ସ୍ଥାନ ପ୍ରଥମ । ତୁଣ୍ଡରେ ଭାଷା ନାହିଁ, ଡାକିଲେ କାନକୁ ଶୁଭେ ନାହିଁ, କେବଳ ଆଖି ଦୁଇଟିରେ ଯାହା ଦେଖିପାରି ତାହାକୁ ହୃଦୟ ଭିତରେ ଅନୁଭବ କରିପାରିବାର ଏକ ଐଶ୍ୱରିକ ଶକ୍ତି ଅଛି । ଅସମ୍ଭବ ଶାରୀରିକ ଦୁର୍ବଳତାକୁ ସମ୍ବଳ କରି ଏହି ମୂକ ବଧିର ଶିଳ୍ପୀ ହାତରେ ତୂଳୀ ଧରି ଯେଉଁ ଅସାଧ୍ୟ ସାଧନ କରିପାରିଛନ୍ତି ସେଥିପାଇଁ ସେ ଯେତିକି ଧନ୍ୟବାଦାର୍ହ ନୁହଁନ୍ତି, ତାହାଠାରୁ ଯଥେଷ୍ଟ ବେଶୀ ପ୍ରଶଂସିତ ଯେହେତୁ ଆନ୍ତର୍ଜାତିକ କ୍ଷେତ୍ରରେ ଓଡ଼ିଶାର ଶିଳ୍ପକଳାକୁ ସେ ପରିଚିତ କରାଇ ପାରିଛନ୍ତି ।

[illegible] ମାଟିମା ଓଡ଼ିଶା କଳାର ଲୀଳାଭୂମି । ଉତ୍କୃଷ୍ଟ କଳା ହେତୁ ଏହାର ନାମ ଉତ୍କଳ । ଏହି ପୁଣ୍ୟ ଭୂମିର ଶିଳ୍ପୀ କଥା କହେ ତାର ଶିଳ୍ପ ମାଧ୍ୟମରେ । ଏଥିପାଇଁ କୋଣାର୍କର ଶିଳ୍ପକଳା ପୃଥିବୀ ପ୍ରସିଦ୍ଧ । ଜଗନ୍ନାଥ ଏବଂ ଲିଙ୍ଗରାଜ ମନ୍ଦିରର ଚାରୁକଳା ଏବେ ସୁଦ୍ଧା ଅସଂଖ୍ୟ ଦର୍ଶକଙ୍କୁ ବିସ୍ମୟାଭିଭୂତ କରିଦେଉଛନ୍ତି । ପ୍ରତ୍ୟେକ ଶିଳ୍ପରେ ଫୁଟି ଉଠିଛି ଶିଳ୍ପୀର ଗଭୀର ଅନ୍ତର୍ଦୃଷ୍ଟି ଏବଂ ଜୀବନ ଦର୍ଶନର ପ୍ରତିବିମ୍ବ । କୋଣାର୍କର ବାରଶହ କାରିଗର ମୂକ ଏବଂ ବଧିର ହୋଇଥାନ୍ତି ତଥାପି ମଧ୍ୟ ଆମର ଗର୍ବ କରିବାର ଅଛି । ମୂକ ହୋଇଥିଲେ ସୁଦ୍ଧା ସେମାନେ ସେମାନଙ୍କର ନୈପୁଣ୍ୟ ପାଇଁ ସତେ ଯେପରି ବାଚାଳ ହୋଇ ଉଠିଛନ୍ତି ।

କିଏ ଜାଣେ ଉତ୍କଳର ଜଣେ ନାମଜାଦା ହୋଇ ଉଠିବା ବ୍ୟକ୍ତି, ସେମାନେ ଏହାର ବ୍ୟତିକ୍ରମ କାହିଁକି ହୋଇ ପାରନ୍ତି ?

ବିପିନବିହାରୀଙ୍କର ଜୀବନ ଚରିତ ଲେଖିବାକୁ ଗଲାବେଳେ ପ୍ରଥମେ ଚମକିତ ହେବାକୁ ହୁଏ ଯେ ସେ ବରଣୀୟ ଶିଳ୍ପୀ ଜନ୍ମରୁ ମୂକ ଏବଂ ବଧିର ନ ଥିଲେ । ପାଞ୍ଚ ପରାଣ ପିଲାଙ୍କ ପରି ସେ କୁଆଁ କୁଆଁ କରି କାନ୍ଦି ଉଠିଥିଲେ । ପାକୁଆ ପାଟିରେ ପାଟି କରି ବାପା ମାଆଙ୍କୁ ଡାକି, ଖୁସି ଦେଇଥିଲେ । ସରକାରୀ କ୍ୱାର୍ଟରରେ ସେ ଖେଳୁଥିଲେ । ତାଙ୍କର ପିତାଙ୍କ ନାମ ଗଗନବିହାରୀ ଚୌଧୁରୀ ଏବଂ ମାତାଙ୍କ ନାମ ସରୋଜିନୀ ଚୌଧୁରୀ । ଓଡ଼ିଆ ସାହିତ୍ୟର ସୁନାମଧନ୍ୟ ବ୍ୟାସକବି ଫକୀରମୋହନ ତାଙ୍କର ଅଜା ଥିଲେ । ପିତା ଗଗନବିହାରୀ ଚୌଧୁରୀ ତତ୍କାଳୀନ ବ୍ରିଟିଶ ରାଜତ୍ୱ ସମୟରେ ଅବିଭକ୍ତ ବଙ୍ଗ, ବିହାର ଏବଂ ଓଡ଼ିଶାରେ ଜଣେ [illegible] ରୂପେ ନିଯୁକ୍ତି ପାଇ କଲିକତାରେ ଅବସ୍ଥାପିତ ହୋଇଥିଲେ ।

କଲିକତା ନଗରୀ ସନ୍ନିକଟବର୍ତ୍ତୀ ଉଲୁବେରିଆ ନାମକ ସହରରେ ସନ ୧୯୦୫ ମସିହା ସେପ୍ଟେମ୍ବର ମାସ କୋଡ଼ିଏ ତାରିଖ ଦିନ ଜନ୍ମଗ୍ରହଣ କରିଥିଲେ । ଜନ୍ମରୁ ବୋଧହୁଏ ପ୍ରାଚୁର୍ଯ୍ୟ ଭିତରେ ବଢ଼ିବାର ସମସ୍ତ ସୁଯୋଗ ଥିଲା ବୋଲି ପରିଣତ ବୟସରେ ସେ ବହୁତ ଦୁଃଖ କଷ୍ଟର ସମ୍ମୁଖୀନ ହୋଇଥିଲେ । ବିପିନ ବିହାରୀଙ୍କର ଜନ୍ମପରେ ପରିବାର ଭିତରେ ଆନନ୍ଦ ଉଲ୍ଲାସର ଢେଉ ଖେଳିଗଲା । ବାପ, ମାଆଙ୍କର ଆନନ୍ଦ କହିଲେ ନ ସରେ । କୋଳରୁ କାଖକୁ ହେଉ ହେଉ ପୁଅର ଦିନ ସରେ । ତଳେ ଠିଆ ହେବାକୁ ଫୁରସତ୍ କାହିଁ ?

କିନ୍ତୁ ବିଧାତା କାହା ଭାଗ୍ୟରେ କ'ଣ ଲେଖିଥାନ୍ତି, ତାହା କାହାରିକୁ ଜଣା ନଥାଏ । ସେଥିପାଇଁ ଏହାର ନାମ ଅଦୃଷ୍ଟ । ସକାଳକୁ ଦେଖି ଦିନଟି ଭଲ ହେବ ବୋଲି ଯେଉଁମାନେ ପରିକଳ୍ପନା କରିଥାନ୍ତି ସେମାନଙ୍କୁ ଏଠାରେ ହାର ମାନିବାକୁ ହୁଏ । ଖରା, ବର୍ଷା, ଶୀତ, ବସନ୍ତରେ ସେ ମଣିଷ ଜୀବନକୁ ଏପରି ତିଆରି କରନ୍ତି ଯେଉଁଥିପାଇଁ ସମସ୍ତେ କହନ୍ତି—

କପାଳ ଲେଖା କିଏ ଲିଭେଇ ପାରେ । କିମ୍ବା ଘଟଣା ଘଟିବେ ସାଙ୍ଗେ—ତାହା କାହାର ହାତରେ ନାହିଁ ।

ହୃଦରେ ରୂପ । ଦେଖିଲେ ଯାହା ଶାନ୍ତି ମଧ୍ୟ ଘଟଇ, ଦରିଦ୍ର ବୃଦ୍ଧି ରହିବ । ବିନ୍ଦୁବେଦଭି ବାବଙ୍କର ପୁନରୁ ଭବିଷ୍ୟତ ବିଷୟରେ କେତେ ବିଚାର । ସମାଜସେବିକା ମାତାଙ୍କର କେତେ କଳ୍ପନା, ଜଳ୍ପନା; କେତେ ସ୍ୱପ୍ନ । କିନ୍ତୁ ମୂକ ଯେ କାଳ ଥିଲ ତାହା ଏଇ ଦୁଇପ୍ରାଣୀ ଜାଣି ନଥିଲେ । ଦେଶରେ ମ୍ୟାଲେରିଆ ଜ୍ୱର ମହାମାରୀ ହୋଇ ଆସିଲା । ଆଜିକାଲି ପରି ମ୍ୟାଲେରିଆ ଜ୍ୱରକୁ ନିରାକରଣ ପାଇଁ ବିଜ୍ଞାନ ଏତେ ଅଗ୍ରଗତି କରିପାରି ନଥିଲା । ଫଳରେ ମାତ୍ର ଦେଢ଼ ବର୍ଷର ଶିଶୁ ବିପିନବିହାରୀ ଏହି ମ୍ୟାଲେରିଆ କବଳରୁ ରକ୍ଷା ପାଇ ପାରିଲେ ନାହିଁ । ବଡ଼ ସହରରେ ଯୋଗ୍ୟ ଯୋଗ୍ୟ ସିଦ୍ଧହସ୍ତ ଚିକିତ୍ସକମାନଙ୍କ ସମ୍ପର୍କ ଥିବାରୁ ଜଜ୍ ସାହେବ ପୁଅକୁ ମରଣ ମୁହଁରୁ ବଞ୍ଚାଇ ପାରିଲେ । ମ୍ୟାଲେରିଆ ଜ୍ୱର ସିନା ବିପିନ ବିହାରୀଙ୍କର ପ୍ରାଣନେଇ ପାରିଲ ନାହିଁ କିନ୍ତୁ ସବୁଦିନ ପାଇଁ ତାଙ୍କୁ ମୂକ ଏବଂ ବଧିର କରିଦେଇଗଲା ।

ଗଗନବିହାରୀ ଚୌଧୁରୀ କିନ୍ତୁ ଏହିଭଳି ଏକ ଆକସ୍ମିକ ଦୁର୍ଘଟଣା ପାଇଁ ଆଦୌ ଦବିଯାଇ ନଥିଲେ । ମନରେ ଅସୀମ ସାହାସ ଓ ଦୃଢ଼ତା ନେଇ ଏହିଭଳି ଏକ ମୂକ ବଧିର ଶିଶୁ ଭଗବାନଙ୍କର ଦାନ ବୋଲି ଗ୍ରହଣ କରିନେଲେ ଏବଂ ଉପଯୁକ୍ତ ପିତା ହିସାବରେ ତାଙ୍କର କର୍ତ୍ତବ୍ୟ ସମ୍ପାଦନ କରିବାକୁ ଆଦୌ ପଶ୍ଚାତ୍‌ପଦ ହୋଇ ନଥିଲେ । ବିଦ୍ୟାଭ୍ୟାସ କରିବାର ସମୟ ହେବାକ୍ଷଣି ସେ ବିପିନ ବିହାରୀଙ୍କୁ କଲିକତା ମୂକ ବଧିର ବିଦ୍ୟାଳୟରେ ଭର୍ତ୍ତି କରିଇ ଦେଇଥିଲେ । ୧୯୨୫ ମସିହାରେ ମୂକବଧିର ବିଦ୍ୟାଳୟରେ ପ୍ରବେଶ କରି, ନିଜ ଶରୀରର ସମସ୍ତ ବୈକଲ୍ୟକୁ ମନରୁ ପାଶୋରିଦେଇ, ଏକ ନୂତନ ଜୀବନ ସନ୍ଧାନରେ ସେ ଏକାଗ୍ର ଚିତ୍ତରେ ଅଧ୍ୟୟନରେ ମନୋନିବେଶ କଲେ ।

ଜଣେ ମେଧାବୀ ଛାତ୍ର ରୂପେ ସେ କେବଳ ବିଦ୍ୟାଳୟର ଶିକ୍ଷକମାନଙ୍କର ପ୍ରିୟ ନଥିଲେ କିନ୍ତୁ ଭଲ ଖେଳାଳୀ ଏବଂ ଉତ୍ତମ ସ୍ୱେଚ୍ଛାସେବକ ରୂପେ ସେ ଆଦର ଲାଭ କରି ପାରିଥିଲେ ।

ଅନ୍ଧ ଦୁଃଖ ଦେଇ ଭଗବାନ କେବେ ସନ୍ତୁଷ୍ଟ ହୋଇପାରନ୍ତି ? ଦୁଃଖ ଯାହାକୁ ଦିଅନ୍ତି ଭଲକରି ଦିଅନ୍ତି ଆଉ ସୁଖ ଦେଲାବେଳେ ମନଇଚ୍ଛା ଦିଅନ୍ତି । ତେଣୁ ବିପିନ ବିହାରୀଙ୍କ ପିଲାଦିନରୁ ମୂକ ବଧିର କରି ଭଗବାନ କିପରି ସନ୍ତୁଷ୍ଟ ହୋଇ ପାରନ୍ତି ? ସ୍କୁଲରେ ପାଠ ପଢ଼ୁଥିଲା ବେଳେ ହଠାତ୍ ପିତା ମୋହନବିହାରୀ ଚୌଧୁରୀଙ୍କର ଅକାଳ ବିୟୋଗ ଘଟିଲା ।

ମୂକ ବଧିର କିଶୋର ବିପିନବିହାରୀ ପିତୃହରା ହୋଇ ବିମର୍ଷ ହୋଇ ପଡ଼ିଲେ । ମନର ଭାବନାକୁ କେବଳ ଆଖିରେ ଲୁହବାଟେ ଯେ ପ୍ରକାଶ କରିବା ବ୍ୟତୀତ ଆଉ ଉପାୟ କ'ଣ ଥିଲା ? ମାତା ସରୋଜିନୀ ଦେବୀ ପୁତ୍ରର ଅନ୍ତର ବେଦନା ବୁଝି ପାରିଲେ । ସ୍ୱାମୀଙ୍କ ଅସମାପ୍ତ କାର୍ଯ୍ୟକୁ ହାତକୁ ନେଲେ । ବିପିନ ବିହାରୀଙ୍କୁ ପୁଣି ପଢ଼ିବାକୁ ଉତ୍ସାହ ଦେଲେ । କେବଳ ମାତାଙ୍କର ପ୍ରେରଣା ଫଳରେ ବିପିନ ବିହାରୀ ୧୯୨୩ ମସିହାରେ କଲିକତା ମୂକ ବଧିର ବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହେଲେ ।

ଚିତ୍ରାଙ୍କନ ପ୍ରତି ବିପିନ ବିହାରୀଙ୍କର ପିଲାଦିନରୁ କିପରି ଏକ ଅହେତୁକ ଆଗ୍ରହ ଥିଲା । ସେ କଳାକୁ ଜୀବନଠାରୁ ଭଲ ପାଉଥିଲେ । ଅବସର ସମୟରେ ସେ କେବଳ ଚିତ୍ର ଅଙ୍କନ କରୁଥିଲେ । କଳା ପ୍ରତି ତାଙ୍କର ଏହି ମମତା ହେତୁ ସେ କଲିକତା ଆର୍ଟସ ସ୍କୁଲରେ ପ୍ରବେଶ କରିବାର ସୁଯୋଗ ପାଇଲେ । ପିତାଙ୍କ ବିୟୋଗ ପରେ ଘରର ଆର୍ଥିକ ଦୁଃସ୍ଥିତି ହେତୁ ଆର୍ଟସ ସ୍କୁଲରେ ଅଧ୍ୟୟନ କରିବା ସମୟରେ ସେ ତାଙ୍କର ପରିବାର ବର୍ଗଙ୍କ ଠାରୁ ଆଦୌ ଆର୍ଥିକ ସାହାଯ୍ୟ ଗ୍ରହଣ କରି ନଥିଲେ । ତାଙ୍କ ଜୀବନର ଏହି ସମୟଟି ଏକ ପରୀକ୍ଷା ସମୟ କହିଲେ ଅତ୍ୟୁକ୍ତି ହେବ ନାହିଁ । କେବଳ ନିଜକୀୟ ବୃତ୍ତିକୁ ସମ୍ବଳ କରି ବଡ଼ କଷ୍ଟରେ ଆର୍ଟସ ସ୍କୁଲରେ ତାଙ୍କୁ ପଢ଼ିବାକୁ ହୋଇଥିଲା ।

କଲିକତା ଆର୍ଟସ ସ୍କୁଲର ଛାତ୍ର ଥିବା ସମୟରେ ସେ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କ ସଂସ୍ପର୍ଶରେ ଆସିବାର ସୁଯୋଗ ପାଇଲେ । କବି

ଗୁରୁଙ୍କର ପ୍ରେରଣା ଏବଂ ପରାମର୍ଶ ମତରେ ସେ ସୂକ୍ଷ୍ମ ଏବଂ ବୈଷୟିକ କଳା (ବା Fine and Commitrcal Art) ଶିକ୍ଷା କଲେ । ପ୍ରତିଭା ବିକଶିତ ହେବାକୁ ଲାଗିଲା । ଉପଯୁକ୍ତ ଗୁରୁଙ୍କ ତତ୍ତ୍ୱାବଧାନ ହେତୁ ସେ ତାଙ୍କର ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କଲେ ଏବଂ କଲିକତାରେ ବିଭିନ୍ନ ଚିତ୍ର ପ୍ରଦର୍ଶନୀରେ ନିଜର ଚିତ୍ର ପ୍ରଦର୍ଶିତ କରାଇବାର ସୁଯୋଗ ପାଇଲେ । କେତେକ ଚିତ୍ର ତାଙ୍କର ପ୍ରଶଂସିତ ହେଲା । ସେ ଏଥିପାଇଁ ଅନେକ ପୁରସ୍କାର ଏବଂ ପଦକମାନ ପାଇବାକୁ ଲାଗିଲେ । ଆର୍ଥିକ ଅନାଟନକୁ ଏଡ଼ାଇବା ପାଇଁ ତାଙ୍କୁ ଏଣିକି ଚିତ୍ର ସବୁ ବିକ୍ରୟ କରିବାକୁ ସୁବିଧା ମିଳିଗଲା । ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରିଥିବାରୁ ତାଙ୍କର ସ୍କୁଲ ଦରମା ସମ୍ପୂର୍ଣ୍ଣ ରୂପେ ଛାଡ଼ କରାଗଲା । ଏହି ସ୍କୁଲର ଛାତ୍ର ଥିବା ସମୟରେ ସେ ତତ୍‌କାଳୀନ ଗଭର୍ଣ୍ଣରଙ୍କ ଲର୍ଡ ରୋନାଲ୍‌ଡ଼ ସେ ଏବଂ ସାର୍ ଜାକ୍‌ସନ୍ ଏବଂ ତାଙ୍କର ପତ୍ନୀ ଲେଡ଼ି ଜାକ୍‌ସନ୍‌ଙ୍କୁ ତାଙ୍କର ଅଙ୍କିତ ଚିତ୍ର ଉପହାର ଦେଇଥିଲେ ।

ଏକଦା ଏକ ଚିତ୍ରାଙ୍କନ ପ୍ରଦର୍ଶନୀରେ ଅଂଶ ଗ୍ରହଣ କରିଥିବା ବେଳେ ବିଖ୍ୟାତ କଳାପ୍ରେମୀ C·F· Andrews (ସି: ଏଫ୍: ଆଣ୍ଡ୍ରୁଜ୍)ଙ୍କ ସହିତ ସାକ୍ଷାତ ହେବାର ସୁଯୋଗ ବିପିନବିହାରୀଙ୍କୁ ମିଳିଥିଲା । ଭଗବାନଙ୍କ ଦ୍ୱାରା ପ୍ରେରିତ ଦେବଦୂତ ଭଳି ତୋଳିଦେଇ ଏହି ମହାନ୍ କଳାପ୍ରେମୀ ବ୍ୟକ୍ତି ତାଙ୍କ ଜୀବନରେ ଦେଖା ଦେଇ ନ ଥିଲେ ତାଙ୍କର, ଆଶା ଓ ଆକାଙ୍‌କ୍ଷା ସୁଦୂର ପ୍ରସାରୀ ହୋଇ ପାରି ନ ଥାନ୍ତା । ସେ ଏକ କୂପମଣ୍ଡୂକ ହୋଇ ରହିଯାଇଥାନ୍ତେ, ଏବଂ କୌଣସି ସ୍କୁଲରେ ଡ୍ରଇଂ ଶିକ୍ଷକ ରୂପେ ନିଯୁକ୍ତ ପାଇ ଶିମ୍ବ, ଆମ୍ବ ଏବଂ ପଦ୍ମ ପତ୍ରର ଚିତ୍ର ହିଁ ଅଙ୍କାଉଥାନ୍ତେ ।

ଫାଇନ୍ ଆର୍ଟରେ ବିଶେଷ ଗବେଷଣା କରିବା ପାଇଁ ୧୯୩୦ ମସିହାରେ ବିପିନ ବିହାରୀ ବମ୍ବେ ଯାତ୍ରା କଲେ । ବମ୍ବେରେ ପହଞ୍ଚିବା ପରେ ଉତ୍କଟ ଅର୍ଥାଭାବ ତାଙ୍କୁ ବିଚଳିତ କରି ଦେଇଥିଲା । କପର୍ଦ୍ଦକଶୂନ୍ୟ

ଚିହ୍ନାକି ଦିନ ଦିନ ଏକା ସେ ବମ୍ବେ ନଗର ରାସ୍ତାରେ ଘୂରି ବୁଲନ୍ତନ୍ତି । ବହୁ ଧନାଢ୍ୟ ବ୍ୟକ୍ତିଙ୍କର ଦ୍ୱାରସ୍ଥ ହୋଇନ୍ତନ୍ତି । ଶେଷରେ ଭଗବାନଙ୍କ ଅପାର କରୁଣା ଫଳରେ ଜଣେକ ବର୍ଣ୍ଣୀ ଭଦ୍ର ବ୍ୟକ୍ତିଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ସେ ବିପିନବିହାରୀଙ୍କଠାରୁ ସମସ୍ତ ବୃତ୍ତାନ୍ତ ଜାଣି ପାରି ତାଙ୍କର ଏକ ବିତ୍ତଶାଳୀ ବନ୍ଧୁଙ୍କ ନିକଟକୁ ତାଙ୍କୁ ନେଇଗଲେ । ସେ ମହାଶୟ ବ୍ୟକ୍ତି ବିପିନବିହାରୀଙ୍କୁ ତାଙ୍କ ଘରେ ରଖି ତାଙ୍କର ଦୁଇ ପୁଅଙ୍କ ଚିତ୍ରାଙ୍କନ ଶିକ୍ଷା ଦେବା କାର୍ଯ୍ୟରେ ନିଯୁକ୍ତ କରିଦେଲେ । ଯାହା ହେଉ ଏଣିକି ଖାଇବା ଓ ରହିବାର ସୁବିଧା ଭଗବାନ କରି ଦେଲେ ।

ଶିକ୍ଷା ଗ୍ରହଣ କରିବା ଆଶାରେ ବିପିନ ବିହାରୀ ସିନା ବମ୍ବେ ଯାଇଥିଲେ କିନ୍ତୁ ଶିକ୍ଷା ଦେବା ପାଇଁ ନୁହେଁ । ତେଣୁ ତାଙ୍କର କଳା ଶିକ୍ଷା ପିପାସୀ ମନ ସବୁବେଳେ ସନ୍ଧାନରେ ଅସ୍ଥିର ହୋଇ ଉଠୁଥିଲା ।

ବମ୍ବେରେ ଥିବା ଭାରତ ବିଖ୍ୟାତ କଳା ନିକେତନ ଜେ, ଜେ, ସ୍କୁଲ ଅଫ୍ ଆର୍ଟସ୍‌ରେ ଅଧ୍ୟୟନ କରିବା ପାଇଁ ବିପିନବିହାରୀ ବମ୍ବେ ଆସିଥିଲେ । ତାଙ୍କର ପଠନ ପିପାସା ଏବେ ବଳବତୀ ହୋଇ ଉଠିଲା ଯାହା ଫଳରେ ତାଜମହଲ ହୋଟେଲରେ ସେତେବେଳେ ଅବସ୍ଥାନ କରୁଥିବା ପ୍ରଖ୍ୟାତ ନାରୀ ନେତ୍ରୀ ଶ୍ରୀମତୀ ସରୋଜିନୀ ନାଇଡୁଙ୍କ ସହ ସାକ୍ଷାତ କଲେ । ସରୋଜିନୀ କେବଳ ଜଣେ କଂଗ୍ରେସ ନେତ୍ରୀ ନ ଥିଲେ, ସେ ମଧ୍ୟ ଜଣେ କବି ଥିଲେ । ତାଙ୍କର କବିତା ପାଇଁ ସେ ସମଗ୍ର ବିଶ୍ୱରେ ପରିଚିତା ଥିଲେ । ତାଙ୍କର କବିପ୍ରାଣ ଏହି ତରୁଣ କଳାକାରଙ୍କ କରୁଣ କାହାଣୀରେ ବିଗଳିତ ହୋଇ ଉଠିଲା । ସେ ମହାଶୟା, ବମ୍ବେରେ ତାଙ୍କର କେତେକ ପ୍ରତିଷ୍ଠିତ ବନ୍ଧୁଙ୍କ ସହ ବିପିନବିହାରୀଙ୍କୁ ପରିଚିତ କରାଇ ଦେଇଥିଲେ । ଫଳରେ ବିଶିଷ୍ଟ ଶିଳ୍ପପତି ଚୁନିଲାଲ ମେହେତା ଏବଂ ଟାଟା ପରିବାରର ମିଷ୍ଟର୍ ଜେ: ଡି: ଟାଟାଙ୍କ ପୃଷ୍ଠପୋଷକତାରେ ସେ ଜେ, ଜେ, ଆର୍ଟ ସ୍କୁଲରେ ପଢ଼ିବାର ସୁଯୋଗ ପାଇ ପାରିଲେ ।

ଜେ, ଜେ, ଆର୍ଟ ସ୍କୁଲରେ ପଢ଼ିବା ସମୟରେ ତାଙ୍କୁ ସେପରେ ପାଶ୍ଚାତ୍ୟ ଦେଶ ହାତ ଠାରି ଡାକୁଥିଲା । ବମ୍ବେର ଶିକ୍ଷା ତାଙ୍କୁ ଅଶେଷ

ସନ୍ତୋଷ ଦେଇ ପାରି ନ ଥିଲ । ତେଣୁ ପକେଟରେ ମାତ୍ର ଏକ ସହସ୍ର ଟଙ୍କା ପାଥେୟକୁ ସମ୍ବଳ କରି ତରୁଣ ବିପିନବିହାରୀ ପଚିଶ ବର୍ଷ ବୟସରେ ସନ ୧୯୦୬ ମସିହା ଜୁଲାଇ ତେର ତାରିଖ ଦିନ ଇଂଲଣ୍ଡ ଯାତ୍ରା କଲେ ।

ଏକ ନୂତନ ଦେଶରେ ସମ୍ପୂର୍ଣ୍ଣ ଅପରିଚିତ ହୋଇ ଭଗ୍ନ ଚିତ୍ତ ଚଳଣି ଭିତରେ ବିପିନ ବିହାରୀ ଅଗଷ୍ଟ ଚାରି ତାରିଖ ଦିନ ଇଂଲଣ୍ଡରେ ପହଁଞ୍ଚିଲେ । ବିଲାତର ରାଜରାସ୍ତାରେ ପାଦ ଦେବା ପରେ ସେ ଏହି ବିଳାସ ପୂର୍ଣ୍ଣ ନଗରୀରେ ନିଜର ଦାରିଦ୍ର୍ୟ ବିଷୟରେ ସଚେତନ ହୋଇ ଉଠିଲେ । ଅପରିଚିତ ହୋଇ ମଧ୍ୟ ସାହାଯ୍ୟ ପାଇବା ପାଇଁ ମନରେ ଅନେକ ଆଶା ଧରି ସେ ତତ୍‌କାଳୀନ ଭାରତୀୟ ହାଇକମିଶନର ଶ୍ରୀଯୁକ୍ତ ବି: ଏନ୍: ମିତ୍ରଙ୍କୁ ସାକ୍ଷାତ କଲେ । ବିପିନ ବିହାରୀଙ୍କ ଅସୁବିଧା କଥା ଶୁଣି ଏହି ମହାଶୟ ତାଙ୍କୁ ସାହାଯ୍ୟ କରିବା ପରିବର୍ତ୍ତେ ତାଙ୍କୁ ଶୀଘ୍ର ଇଂଲଣ୍ଡ ତ୍ୟାଗ କରି ଭାରତକୁ ଫେରିଯିବା ପାଇଁ ବାଧ୍ୟ କରିଥିଲେ । ତାଙ୍କ ହତୋତ୍ସାହ ବାଣୀ ତାଙ୍କୁ ଏପରି ଭୟଭୀତ କରି ଦେଇଥିଲା ଯେ ସେ ମନେ ମନେ ଭାବିଲେ ତାଙ୍କ ଜୀବନର ଲକ୍ଷ୍ୟ ଆଉ ବୋଧହୁଏ ପୂରଣ ହୋଇ ପାରିବ ନାହିଁ । ବିଲାତରୁ ବିଫଳ ହୋଇ ପ୍ରତ୍ୟାବର୍ତ୍ତନ କରିବା କଥା ଚିନ୍ତା କଲାବେଳେ ତାଙ୍କ ଆଖି ଆଗରେ ତାଙ୍କ ପରିବାରର ଚିତ୍ର ଭାସି ଉଠୁଥାଏ । ଯେଉଁ ମାନଙ୍କର ଇଚ୍ଛା ବିରୁଦ୍ଧରେ ସେ ବିଲାତ ଯାତ୍ରା କରିଥିଲେ, ଏବେ ବିଫଳ ହୋଇ ଫେରିଲେ ସେମାନଙ୍କର ତାଚ୍ଛଲ୍ୟ ତାଂକ ପକ୍ଷରେ ଅସହ୍ୟ ହୋଇ ଉଠିବ । କାରଣ, ତାଂକର ବିଦେଶ ଶିକ୍ଷାକୁ ସେମାନେ ପାଗଳର ପ୍ରଳାପ ବୋଲି ମନେ କରିଥିଲେ । ଏହିଭଳି ଏକ ମାନସିକ ଦୋଳାୟମାନ ପରିସ୍ଥିତିରେ ଈଶ୍ୱରହିଁ ବଡ଼ଲୋକ ସିଏକ ତାଙ୍କୁ ସାହାଯ୍ୟ କଲେ । ତାଂକର ସି: ଏଫ୍: ଆଣ୍ଡ୍ରୁଜଙ୍କ କଥା ମନେ ପଡ଼ିଲା । ସେ ସଙ୍ଗେ ସଙ୍ଗେ ତାଙ୍କୁ ସାକ୍ଷାତ୍ କରିବାକୁ ସ୍ଥିର କଲେ ଏବଂ ତାଂକ ନିକଟରେ ପହଞ୍ଚି ନିଜର ସମସ୍ତ ବୃତ୍ତାନ୍ତ ବିଶଦ ଭାବରେ ବର୍ଣ୍ଣନା କଲେ । ପିତୃ ସୁଲଭ ସ୍ନେହ ଏବଂ ମମତା ଦେଇ ଅଶେଷ ଧୈର୍ଯ୍ୟ

...କୀରେ ... ବଟିନ ... ତାଙ୍କ ସମସ୍ତ ଶ୍ରେଣୀ ସ୍ତରର ଛାତ୍ର ସମସ୍ତ ପ୍ରକାର ସାହାଯ୍ୟ ଓ ସହଯୋଗ ଦେବାର ନାହିଁର ... କରାଇଲେ ।

ମି. ଏଫ୍, ଆଣ୍ଡ୍ରୁ ଜଙ୍କ ଆସିବା ଏବଂ ପ୍ରେରଣାକୁ ସାଥେଯ୍ କରି ସେ ରୟାଲ କଲେଜ ଅଫ୍ ଆର୍ଟସରେ ନାମ ଲେଖାଇବା ପାଇଁ ପ୍ରବେଶିକା ପରୀକ୍ଷାରେ ଯୋଗ ଦେଲେ । ପ୍ରବେଶିକା ପରୀକ୍ଷା ଫଳ ପ୍ରକାଶିତ ହେଲା । ... ସମସ୍ତ ପରୀକ୍ଷାର୍ଥୀଙ୍କ ଭିତରେ ପ୍ରଥମ ସ୍ଥାନ ଅଧିକାର କଲେ । ତାଂକର ଏହି କୃତିତ୍ୱ ସାର ବ. ଏନ୍ ମିଶ୍ର ... ବଢ଼ାଇ ଦେଲା । ସେ ... କେବଳ ଅଭିବାଦନ ଜଣାଇବାକୁ ଆ...ଲେ ନାହିଁ ବରଂ ତାଂକର ନାମ ଲେଖାଇବା ଏବଂ ପଢ଼ିବାର ସମସ୍ତ ସୁବିଧା କରାଇ ଦେଲେ । ସୁଯୋଗ ସେତେବେଳେ ଆସେ ... ଆସେ । ଏହା-ପରେ ସେ ସାର୍ ଆଲେକ୍‌ଜାଣ୍ଡର ଆର. ମୁରେ., ମି. ... ଏବଂ ଭାରତ ... ରାଜ୍ୟଂକର କମିଶନଂକର ଶିକ୍ଷା ... ଉପଦେଷ୍ଟା ଡକ୍ଟର ...ଙ୍କ ସହ ସାକ୍ଷାତ କରିଥିଲେ । ଏହି ଦୁଇ ... ଭଦ୍ର ବ୍ୟକ୍ତିଂକ ସାହାଯ୍ୟ ଫଳରେ ତାଂକର ବହୁଦିନର ... ରୂପ ନେଲା । ସେ ରୟାଲ କଲେଜ ଅଫ୍ ଆର୍ଟସରେ ପାଠ ପଢ଼ିବାର ସମସ୍ତ ସୁଯୋଗ ପାଇ ପାରିଲେ ।

ବିଲାତରେ ରହିବା ସମୟରେ ସେ ସେଠାରେ ... ପ୍ରଦର୍ଶନୀ କରାଇଥିଲେ । ତାଙ୍କ ଦ୍ୱାରା ଅଙ୍କିତ ଚିତ୍ର ସବୁ ବିଲାତର ବିଶିଷ୍ଟ ପ୍ରଖ୍ୟାତ ଚିତ୍ର ଶିଳ୍ପୀମାନଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଥିଲା ଏବଂ ସେମାନେ ... ପୁରସ୍କୃତ କରିଥିଲେ । ଅନେକ ବିଶିଷ୍ଟ ... ଯଥା —ଆଗା ଖାଁ, ସାର୍ ତେଜ ବାହାଦୁର ସାପ୍ରୁ, ଓଡ଼ିଶାର ଅବସର ପ୍ରାପ୍ତ କମିଶନର ଶ୍ରୀ ଓ ଶ୍ରୀମତୀ ... ପ୍ରଭୃତି ଅନେକ ଭଦ୍ର ବ୍ୟକ୍ତି ସେହି ଚିତ୍ର ପ୍ରଦର୍ଶନୀରୁ ତାଙ୍କର ଚିତ୍ରକୁ ଏତେ ଦାମ୍ ଦେଇ କିଣିଥିଲେ ଯାହାକି ତାଙ୍କର କଳ୍ପନାର ବାହାରେ ଥିଲା ।

ଶାରୀରିକ ବୈକଲ୍ୟ ସତ୍ତ୍ୱେ ... ସାହାଯ୍ୟ ଛାତ୍ରମାନଙ୍କୁ ଫାଇନାଲ ପରୀକ୍ଷାରେ ସେ ... ସମଗ୍ର କଲେଜର ...

ହୋଇ ରହିଥିଲେ ହେଲେ । ସେହି ସେମିଆ କଣ ସମଗ୍ର ପୃଥିବୀରେ କହୁଥିଲେ ଅଛନ୍ତି ହେବ ନାହିଁ ଯେ ସେ ହେଉଛନ୍ତି ଏକ ମାତ୍ର ମୂକ ବଧିର ଯୁବକ ଯିଏକି A. R. C. A. ଭଳି ସମ୍ମାନ ସୂଚକ ଡ଼ିଗ୍ରୀ ପାଇବା ପାଇଁ ଯୋଗ୍ୟ ବିବେଚିତ ହୋଇଲେ । ତାଙ୍କର ପରୀକ୍ଷା ଫଳ ଯେଉଁଦିନ ପ୍ରକାଶିତ ହେଲା ସେହିଦିନ ତାଙ୍କର କୃତିତ୍ୱରେ ପ୍ରିନ୍ସିପାଲ ଫାଦର ଓଲିଭିୟର୍ ହୋଏଗୋନ୍ଷ୍ଟିନ୍ ତାଙ୍କୁ ଅଭିନନ୍ଦନ ଜଣାଇବାକୁ ଆସି କହିଥିଲେ— "ଭାରତକୁ ଫେରିଗଲେ ପରେ ମିଷ୍ଟର ଚୌଧୁରୀ ଦେଶର ଜାତୀୟ ଅମୂଲ୍ୟ ସମ୍ପଦ ରୂପେ କାର୍ଯ୍ୟ ପରିଚୟ ଦେବେ ।"

ତାଙ୍କର କୃତିତ୍ୱ ବିଷୟରେ ମନ୍ତବ୍ୟ ଦେବାକୁ ଯାଇ ଜେନେରାଲ ମିରର ଲେଖିଥିଲେ ଯେ—ପଦେ କଥା କହିବାକୁ ଏବଂ ଶୁଣିବାକୁ ଅସମର୍ଥ ଥିବା ଏକ ଭାରତୀୟ ଯୁବକ କେବଳ ଶିକ୍ଷକ ମାନଙ୍କର ଓଠର ଚଳନାର ଅଙ୍ଗଭଙ୍ଗୀରୁ ଲେକ୍‌ଚର ସବୁ ଅନୁମାନ କରି ଯେଉଁଭଳି କୃତିତ୍ୱ ପ୍ରଦର୍ଶନ କଲେ ତାହା ଅନନ୍ୟ । ସେହି ଶିଳ୍ପୀ ବର୍ତ୍ତମାନ ଭାରତକୁ ଫେରିଯାଇ ମୂକ ବଧିର ମାନଙ୍କ ସେବାରେ ନିଜକୁ ନିୟୋଜିତ କରିବା ପାଇଁ ନିଷ୍ପତ୍ତି କରିଛନ୍ତି ।

ଲଣ୍ଡନରେ ଥିବା ସମୟରେ ସମଗ୍ର ପୃଥିବୀର ବଧିରମାନଙ୍କ ସାହାଯ୍ୟ ପାଇଁ ୧୯୩୫ ମସିହା ଅଗଷ୍ଟ ଚବିଶି ତାରିଖରେ ଏକ ଅନ୍ତର୍ଜାତିକ କ୍ରୀଡ଼ା ପ୍ରତିଯୋଗିତା ଅନୁଷ୍ଠିତ ହୋଇଥିଲା । ଏହି ପ୍ରତିଯୋଗିତା ପାଇଁ ବିପିନ ବିହାରୀ କେବଳ ସ୍ୱେଚ୍ଛା ସେବକ ହୋଇ କାମ କରି ନଥିଲେ, ନିଜେ ମଧ୍ୟ କ୍ରୀଡ଼ାରେ ଜଣେ ଖେଳାଳୀ ରୂପେ ଅଂଶ ଗ୍ରହଣ କରିଥିଲେ । ଜର୍ମାନ ଏବଂ ଡେନ୍‌ମାର୍କ ସମେତ ବହୁତ ଅନ୍ୟଦେଶରୁ ଆସିଥିବା ବଧିର କ୍ରୀଡ଼ାବିତ୍‌ମାନଙ୍କ ସହ ତାଙ୍କର ସମ୍ପର୍କ ସ୍ଥାପିତ ହୋଇଥିଲା ।

ବିପିନ ବିହାରୀ ଭାରତକୁ ଫେରି ଆସିବା ପାଇଁ ସ୍ଥିର କରିଥିବା ଖବର ପାଇ ତାଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ ଓ୍ୱେଲେସି ଯେ କି ଲଣ୍ଡନର ସ୍ଥାୟୀ ବାସିନ୍ଦା ସେ ଫୋନ୍‌ରେ ତାଙ୍କୁ ବିଲାତରେ ରହିବାକୁ ଅନୁରୋଧ କଲେ ।

... କିନ୍ତୁ ଜନ୍ମଭୂମିର ମାୟା ତ୍ୟାଗ କରି ପାରିଲେ ନାହିଁ । ସ୍ୱାଧୀନତା ପରେ ଭାରତରେ ଏକ ନବ ଜାଗରଣ ସେତେବେଳେ ସୃଷ୍ଟି ହୋଇଥାଏ । ତାଙ୍କୁ ଜଣା ପଡ଼ିଲା ପରାଧୀନ ଭାରତରେ ସ୍ୱାଧୀନତା ପାଇଁ ତାଙ୍କର ମଧ୍ୟ କିଛି କର୍ତ୍ତବ୍ୟ ଅଛି । ଗୃହବର୍ଗର ପ୍ରବାସ ଜୀବନକୁ ସମାପ୍ତ କରି ସେ ସ୍ୱଦେଶକୁ ଫେରି ଆସିବାକୁ ସ୍ଥିର କଲେ ।

୧୯୩୪ ମସିହା ଅକ୍ଟୋବର ମାସ ଶେଷ ସପ୍ତାହରେ ବିପିନ ବିହାରୀ ଭାରତରେ ପହଞ୍ଚିଲେ । ତାଙ୍କୁ ସାନ୍ତ୍ୱନା ଦେବା ପାଇଁ ତାଙ୍କର ମାତା ସରୋଜମା ଦେବୀ ବମ୍ବେ ବନ୍ଦରକୁ ଆସିଥିଲେ । ବମ୍ବେ ସହରରେ କେତେ ଦିନ ରହିବା ପରେ ସେ ମାଙ୍କ ସହିତ ଜନ୍ମଭୂମି ଓଡ଼ିଶାକୁ ଫେରି ଆସିଲେ ।

କଟକ ସହର ସୁତାହାଟଠାରେ ୧୯୩୭ ମସିହା ଜାନୁଆରୀ ଏକୋଇଶି ତାରିଖ ଦିନ ଏକ ଭଡ଼ା ଘରେ ସେ ବଧିର ପିଲାଙ୍କ ପାଇଁ ଏକ ବିଦ୍ୟାଳୟ ସ୍ଥାପନ କଲେ । ସେ ବିଦ୍ୟାଳୟ ସ୍ଥାପନ କରିବାର ମାତ୍ର ମାସ ଦୁଇଟା ପରେ ମହାତ୍ମା ଗାନ୍ଧୀ ଓଡ଼ିଶା ଗସ୍ତରେ ଆସିଲେ । ପଦଯାତ୍ରା କରି ଗାନ୍ଧୀଜୀ ଡେଲାଙ୍ଗରେ ରହିଥିବା ସମୟରେ ବିପିନ ବିହାରୀ ତାଙ୍କର ଶିଳ୍ପକଳା ପ୍ରଦର୍ଶନ କରିବା ପାଇଁ ଏକ ପ୍ରଦର୍ଶନୀ ଖୋଲିଥିଲେ । ଏହି ପ୍ରଦର୍ଶନୀକୁ ମହାତ୍ମା ଗାନ୍ଧୀ ପରିଦର୍ଶନ କରି ବିଶେଷ ପ୍ରୀତ ହୋଇଥିଲେ । କୋଣାର୍କ ଓ ଭୁବନେଶ୍ୱର ମନ୍ଦିରର ଦୁଇଟି ପ୍ରତିକୃତି ସହିତ ମହାତ୍ମା ଗାନ୍ଧୀଙ୍କର ଏକ ପ୍ରତିମୂର୍ତ୍ତି ସେହିଠାରେ ତିଆରି କରି ସେ ଗାନ୍ଧୀଜୀଙ୍କୁ ଉପହାର ଦେଇଥିଲେ । ସେ ଯେତେବେଳେ ନିଖିଳ ଉତ୍କଳ ମୂକ ବଧିର ବିଦ୍ୟାଳୟ କଟକରେ ସ୍ଥାପନ କଲେ ସେତେବେଳେ ତାଙ୍କୁ ଆଶୀର୍ବାଦ ଜଣାଇ ଗାନ୍ଧିଜୀ ଲେଖିଥିଲେ ଯେ—"ତୁମର ସ୍କୁଲ ମୂକ ଓ ବଧିର ପିଲାମାନଙ୍କ ପାଇଁ ଏକ ଆଶୀର୍ବାଦ ରୂପେ ଠିଆହେବ ।"

ଏହି ବିଦ୍ୟାଳୟ ୧୯୩୭ ମସିହା ସେପ୍ଟେମ୍ବର ମାସ ଏଗାର ତାରିଖ ଦିନ ତତ୍କାଳୀନ ଓଡ଼ିଶାର ମୁଖ୍ୟମନ୍ତ୍ରୀ ମାନ୍ୟବର ବିଶ୍ୱନାଥ

ତାଙ୍କ ଦ୍ୱାରା ଉଦ୍‌ଘାଟିତ ହୋଇଥିଲା । ଏହି ଉଦ୍‌ଘାଟନ ଉତ୍ସବରେ ଓଡ଼ିଶାର ଅନେକ ମାନ୍ୟଗଣ୍ୟ ବ୍ୟକ୍ତି ଯୋଗ ଦେଇଥିଲେ । ବିପିନ ବିହାରୀଙ୍କର ଏହି ଅନୁଷ୍ଠାନର ଉତ୍ତରୋତ୍ତର ଉନ୍ନତି ପାଇଁ ମହାତ୍ମା ଗାନ୍ଧିଙ୍କ ଠାରୁ ରବୀନ୍ଦ୍ରନାଥ ଠାକୁର, ପଣ୍ଡିତ ଜବାହାରଲାଲ ନେହେରୁ, ନେତାଜୀ ସୁଭାଷଚନ୍ଦ୍ର ବୋଷ, ବୈଜ୍ଞାନିକ ସି. ଭି. ରମଣ ପ୍ରମୁଖ ଅନେକ ସମ୍ମାନିତ ବ୍ୟକ୍ତିଙ୍କ ଠାରୁ ଶୁଭେଚ୍ଛା ବାର୍ତ୍ତାମାନ ମିଳିଥିଲା ।

ଅନ୍ଧ କଲା ପାଇଁ ଦିନେ ଯେତେ ଅସହ୍ୟ ଦୁଃଖ ସହିଥିଲେ—ଘର ଦୁଆରେ ଗୋଡ଼ ଭାଙ୍ଗି ଠିଆ ହୋଇଥିଲେ ସେହି ବିପିନ ବିହାରୀ ଶେଷରେ ଏହି ବିଦ୍ୟାଳୟ ପାଇଁ କଲାଠାରୁ ଅନୁଦାନ ପାଇଁ ସଦାପୁ ମାଗି ନେଇ ଓଡ଼ିଶାର ଅବହେଳିତ ଅସହାୟ ମୂକ ବଧିରଙ୍କ ସେବାରେ ଲାଗି ପଡ଼ିଲେ । ଜୀବନର ସମସ୍ତ ବିଳାସ ବ୍ୟସନ, ଅର୍ଥୋପାର୍ଜ୍ଜନ କରି ସାମାଜିକ ପ୍ରତିଷ୍ଠା ସବୁ କିଛିକୁ ସେ ଜଳାଞ୍ଜଳି ଦେଇ ଦେଲେ । ଏହି ଅନୁଷ୍ଠାନର ପ୍ରାରମ୍ଭିକ ଅବସ୍ଥାରେ ସାତଜଣ ଛାତ୍ରଙ୍କୁ ନେଇ ଚଳିବାକୁ ହୋଇଥିଲା । ସୀମିତ ସମ୍ବଳ ଭିତରେ କାର୍ଯ୍ୟ କରୁଥିବାରୁ ସେ ଦରମା ଦେଇ ଆଉ ଅଧିକା ଜଣେ ଶିକ୍ଷକ ରଖି ପାରୁ ନ ଥିଲେ ।

ନିଜର ଚଳିବା ପାଇଁ ସେ କଷ୍ଟ ଦରମାରେ ସେ ସନ୍ତୁଷ୍ଟ ରହି ସ୍କୁଲଟିକୁ ୧୯୫୫ ମସିହା ପର୍ଯ୍ୟନ୍ତ ନିଜ ଦାୟିତ୍ୱରେ ଚଳାଇ ଆସିଲେ ।

୧୯୩୯ ଜୁନ୍ ତିନ ତାରିଖ ଦିନ ବିପିନ ବିହାରୀଙ୍କର ଶୁଭ ପରିଣୟ ଶ୍ରୀମତୀ ନିରୁପମା ଚୌଧୁରୀଙ୍କ ସହ ଅନୁଷ୍ଠିତ ହୋଇଥିଲା । ନିରୁପମା ଦେବୀଙ୍କୁ ବଧୂ ରୂପେ ପାଇ ଚୌଧୁରୀ ପରିବାର ଯେପରି ସନ୍ତୁଷ୍ଟ ହୋଇଥିଲେ ବିପିନ ବିହାରୀ ମଧ୍ୟ କମ୍ ଆନନ୍ଦିତ ହୋଇ ନ ଥିଲେ । ନିରୁପମା ଦେବୀ ପ୍ରକୃତରେ ଜଣେ ସୁଗୃହିଣୀ ଓ ସ୍ୱାମୀଙ୍କ ସହିତ ସହଧର୍ମିଣୀ ରୂପେ କାର୍ଯ୍ୟ କରି ଏ ପର୍ଯ୍ୟନ୍ତ ବିପିନ ବିହାରୀଙ୍କ ଜୀବନକୁ ସୁରଭିତ କରି କରି ଆସୁଛନ୍ତି । ଅନୁମାନ କରାଯାଏ ଯେ ବିପିନ ବିହାରୀ ଯେଉଁ ଆଦର୍ଶକୁ

ସଂକ ଜାତ ଅନ୍ତରରେ ହୋଇଥିଲେ ହିଁ ହୁଏତ ତାଙ୍କ ସାହାଯ୍ୟ ବିନା ତାହା ଆଦୌ ସଫଳ ହୋଇ ପାରି ନ ଥାନ୍ତା ।

ଓଡ଼ିଶାର ବଦାନ୍ୟ ବ୍ୟକ୍ତିମାନଙ୍କର ସାହାଯ୍ୟ ଏବଂ ସରକାରୀ ବୃତ୍ତିରୁ ସମ୍ବଳ କରି ଏହି ବିଦ୍ୟାଳୟର ମୂକ, ବଧିର ଛାତ୍ରମାନେ ୧୯୬୦ ମସିହାଠାରୁ ୧୯୬୫ ପର୍ଯ୍ୟନ୍ତ କୌଣସି ମତେ ଚଳିବାକୁ ଲଗିଲେ । କିନ୍ତୁ ଦିନକୁ ଦିନ ବିଦ୍ୟାଳୟର ଛାତ୍ର ସଂଖ୍ୟା ବୃଦ୍ଧି ପାଇଲା । ସାମାନ୍ୟ ଜଣେ ମୂକ ବଧିର ଶିଳ୍ପୀ ପକ୍ଷରେ ଏତେ ବଡ଼ ଦାୟିତ୍ୱ କ'ଣ ଏକାକୀ ସମ୍ଭାଳିବା ସମ୍ଭବପର ?

ବିପିନ ବିହାରିଙ୍କ ଜୀବନରେ ସବୁଠାରୁ ସ୍ମରଣୀୟ ଘଟଣା ହେଉଛି ଡକ୍ଟର ମିସ୍ ହେଲେନ କେଲରଙ୍କ ସହିତ ସାକ୍ଷାତ୍ । ୧୯୪୯ ମସିହାରେ ତାଙ୍କର ଆମେରିକା ଭ୍ରମଣ ସମୟ ଭିତରେ ନିୟୁର୍କଠାରେ ବିପିନ ବିହାରୀ ସାମାନ୍ୟ ଗୋଟିଏ ଗୋଲାପ ଫୁଲର ତୋଡ଼ା ଉପହାର ଧରି ତାଙ୍କ ସହିତ ସାକ୍ଷାତ କରିଥିଲେ । ବିପିନ ବିହାରୀଙ୍କଠାରୁ ପୁଷ୍ପଗୁଚ୍ଛକ ଗ୍ରହଣ କରି ସେ ଏତେ ଖୁସି ହୋଇ ପଡ଼ିଥିଲେ ଯେ ଭାରତର ଅଧିକାଂଶ ମୂକ ଏବଂ ବଧିର ମାନଙ୍କ ବିଷୟରେ ଜାଣିବା ପାଇଁ ଆଗ୍ରହୀ ହୋଇ ଉଠିଲେ । ତା'ପରଦିନ ଏକ ନୈଶ ଭୋଜନରେ ଯୋଗ ଦେବାପାଇଁ ସେ ଡକ୍ଟର କେଲରଙ୍କୁ ନିମନ୍ତ୍ରଣ କଲେ ଏବଂ ସେହି ଭୋଜି ସଭାରେ ସେ ତାଙ୍କୁ ଭାରତ ପରିଦର୍ଶନ କରି ଯିବା ପାଇଁ ଅନୁରୋଧ ଜଣାଇଲେ । ମିସ୍ ହେଲେନ କେଲର ଆସନ୍ତା ବର୍ଷ ଭାରତ ଭ୍ରମଣରେ ଆସିବା ପାଇଁ ତାଙ୍କର ସ୍ୱୀକୃତି ଜଣାଇଲେ ।

ସମଗ୍ର ବିଶ୍ୱରେ ଥିବା ବଧିର ଓ ମୂକ ଶିଶୁମାନଙ୍କର ଉନ୍ନତି ପାଇଁ ଡକ୍ଟର ମିସ୍ ହେଲେନ କେଲର ତାଙ୍କର ଜୀବନ ଉତ୍ସର୍ଗ କରିଥାନ୍ତି । ତାଙ୍କ ମତରେ ସମଗ୍ର ବିଶ୍ୱ ଗୋଟାଏ ପରିବାର । ଦେଶ ଦେଶ ଭିତରେ ପାର୍ଥକ୍ୟ ଥାଇ ପାରେ କିନ୍ତୁ ସମଗ୍ର ପୃଥିବୀରେ ଥିବା ମୂକ ଓ ବଧିରମାନେ ଗୋଟିଏ ପରିବାରର ସଭ୍ୟ, ସେମାନଙ୍କର ଉନ୍ନତି ପ୍ରତ୍ୟେକ ମାନବର କର୍ତ୍ତବ୍ୟ । ସ୍ନେହ ଓ ଶ୍ରଦ୍ଧା ସେମାନଙ୍କୁ ଦେଇ କେବଳ ଆପଣାର କରି ହେବ ।

ମୂକ ଓ ବଧିରମାନଙ୍କୁ ଶିକ୍ଷିତ କରାଇବା ପାଇଁ କପିଳ ବାବୁଙ୍କ ପ୍ରସ୍ତୁତ କରିଥିବା ଯୋଜନାକୁ ପଢ଼ି ସେ ଅତ୍ୟନ୍ତ ପ୍ରୀତ ହୋଇ ଉଠିଲେ । ଡକ୍ଟର ହେଲେନଙ୍କର ବହୁ ଶୁଭେଚ୍ଛା ପୂର୍ଣ୍ଣ ଚିଠି ଏବଂ ପରାମର୍ଶ ଏବେ ମଧ୍ୟ କପିଳ ବାବୁଙ୍କଠାରେ ଅମୂଲ୍ୟ ସମ୍ପଦ ରୂପେ ଗଚ୍ଛିତ ଅଛି ।

ଆମେରିକାର ମୂକ ବଧିରମାନଙ୍କର ବୈଜ୍ଞାନିକ ପ୍ରଣାଳୀରେ ଶିକ୍ଷା ପଦ୍ଧତି ପରିଦର୍ଶନ କରିବାକୁ କପିଳ ବାବୁ ଲାଗି ପଡ଼ିଲେ । ସାଧାରଣ ସୁସ୍ଥ ମଣିଷ ପରି ଭଗବାନଙ୍କର ଦ୍ୱାରା ଅଭିଶପ୍ତ କେତେଗୁଡ଼ାଏ ଲୋକ ପରି ସମାନ ହୋଇ ପାରିବେ ସେଥିକି ତାଙ୍କର କାମନା ଥିଲା । ତାଙ୍କର ଆମେରିକା ଭ୍ରମଣ ଭିତରେ ସେ ଗାଲଉଡେଟ୍ କଲେଜ ପରିଦର୍ଶନ କରିଥିଲେ ଏବଂ ସେଠାରେ ମୂକ ବଧିର ଛାତ୍ରମାନେ ବିଜ୍ଞାନ ଓ କଳାରେ ସ୍ନାତକ ଶ୍ରେଣୀ ମାନଙ୍କରେ ଅଧ୍ୟୟନ କରୁଥିବାର ଦେଖି ବିସ୍ମୟରେ ସ୍ତମ୍ଭୀଭୂତ ହୋଇ ପଡ଼ିଲେ ।

ଏହି ସମୟରେ ଓ୍ୱାସିଙ୍ଗଟନଠାରେ ଭାରତୀୟ ଦୂତାବାସଠାରେ ପଣ୍ଡିତ ଜବାହାରଲାଲ ନେହେରୁ ଓ ତତ୍କାଳୀନ ରାଷ୍ଟ୍ରଦୂତ ରୂପେ ଭଗ୍ନୀ ଶ୍ରୀମତୀ ବିଜୟଲକ୍ଷ୍ମୀ ପଣ୍ଡିତଙ୍କ ସହ ସାକ୍ଷାତ୍ କରିବାର ସୁଯୋଗ ପାଇଥିଲେ । ସେହିଠାରେ ମହାତ୍ମାଗାନ୍ଧୀଙ୍କର ଏକ ପ୍ରତିକୃତି ସେମାନଙ୍କୁ ଉପହାର ଦେଇଥିଲେ । ତାଙ୍କ ଦ୍ୱାରା ଅଙ୍କିତ ଏହି ପ୍ରତିକୃତିଟି ଏତେ ହୃଦୟସ୍ପର୍ଶୀ ହୋଇଥିଲା ଯେ ପଣ୍ଡିତ ନେହେରୁ ସବୁଦିନ ପାଇଁ ଭାରତୀୟ ଦୂତାବାସ ଅଫିସ ଘରେ ସେହିଟି ରଖିବାକୁ ନିର୍ଦ୍ଦେଶ ଦେଇଥିଲେ । ଓଡ଼ିଶାର ଅଗଣିତ ମୂକ, ବଧିର ଶିଶୁମାନଙ୍କର ଭବିଷ୍ୟତ ବିଷୟରେ ପଣ୍ଡିତ ନେହେରୁଙ୍କ ସହିତ ତାଙ୍କର ଆଲୋଚନା ହୋଇଥିଲା ।

ଆମେରିକାଠାରୁ ସେ ଫ୍ରାନ୍ସ ଯାତ୍ରା କଲେ । ସେଠାରେ ବଧିର ପିଲାମାନେ "ପାଲଗ୍ଲାସ" (Poul Glass) ସାହାଯ୍ୟରେ ପ୍ରକୃତ ଉଚ୍ଚାରଣ ଶିକ୍ଷା କରୁଥିବାର ପ୍ରଥମ ଥର ପାଇଁ ଦେଖିବାକୁ ପାଇଲେ । କଳା ପାଇଁ ଯେପରି ଅନୁସନ୍ଧିତ୍ସୁ ମନ ତାଙ୍କର ପାଗଳ ହୋଇଥିଲା ଏବଂ

ଯାଉଥିବାରୁ ସେ ଦେଶ ଦେଶାନ୍ତର ଘୂରି ବୁଲିଥିଲେ ସେହିଭଳି କେତେ-ଗୁଡ଼ିଏ ମୂକ ବଧିରମାନଙ୍କୁ ଶିକ୍ଷିତ କରାଇବା କଥାରେ ସେ ଆସକ୍ତ ହୋଇ ପଡ଼ିଲେ । ପ୍ରଥମ ଥର ତାଙ୍କର ବିଦେଶ ଭ୍ରମଣ ସମୟରେ ସେ ଇଂଲଣ୍ଡ, ଫ୍ରାନ୍ସ, ଆମେରିକା ଏବଂ ପାରସ ପ୍ରଭୃତି ଦେଶରେ ନୂତନ ବୈଜ୍ଞାନିକ ପ୍ରଣାଳୀରେ ଶିକ୍ଷା ପଦ୍ଧତିର ଅନୁଧ୍ୟାନ କରିବାକୁ ଲାଗିଲେ ।

୧୯୪୯ ମସିହା ଡିସେମ୍ବର ମାସ ତିରିଶ ତାରିଖ । ସେ ତାଙ୍କର ବିଦେଶ ଭ୍ରମଣ ଶେଷ କରି ଫ୍ରାନ୍ସ, ଇଂଲଣ୍ଡ ଏବଂ ଆମେରିକାର ଅଗଣିତ ମୂକ ବଧିର ଶିକ୍ଷକଙ୍କଠାରୁ ମୁଠା ମୁଠା ସ୍ନେହ ଓ ଶୁଭେଚ୍ଛା ଭାରତର ଅସହାୟ ମୂକ ବଧିର ଶିଶୁଙ୍କ ପାଇଁ ନେଇ ବମ୍ବେଠାରେ ପହଞ୍ଚିଲେ । ଭାରତକୁ ଫେରି ଆସିବା ପରେ ପ୍ରତ୍ୟେକ ଜାତୀୟ ନେତାଙ୍କୁ ସ୍ମାରକ ପତ୍ର ଏବଂ ବ୍ୟକ୍ତିଗତ ସାକ୍ଷାତ ଜରିଆରେ ଭାରତବର୍ଷରେ ଗାଲାଉଡେଟ୍ କଲେଜ ପରି ଏକ ଅନୁଷ୍ଠାନ ପ୍ରତିଷ୍ଠା କରିବାକୁ ଅନୁରୋଧ କରିବାକୁ ଲାଗିଲେ । କିନ୍ତୁ ତାଙ୍କ ମନରେ ଏକ ଅସନ୍ତୋଷ ରହିଗଲା—ତାଙ୍କର ଅନୁରୋଧ କେବଳ ପ୍ରତିଶ୍ରୁତି ଭିତରେ ହିଁ ରହିଗଲା········ ।

ଯାହା ହେଉ ତାଙ୍କୁ ଏତିକି ସାନ୍ତ୍ୱନା ମିଳିଲା ଯେ କଟକ ସୁତାହାଟ ଠାରେ ସାମାନ୍ୟ ଭଡ଼ାଘର ବାରଣ୍ଡାରେ ସେ ଯେଉଁ ଅନୁଷ୍ଠାନ ପ୍ରତିଷ୍ଠା କରାଇଥିଲେ, ତାହାର ସମ୍ପୂର୍ଣ୍ଣ ପରିଚାଳନା ଦାୟିତ୍ୱ ଓଡ଼ିଶା ସରକାର ୧୯୫୬ ମସିହାରେ ଗ୍ରହଣ କରି ନେଲେ ।

ଓଡ଼ିଶାର ନୂତନ ରାଜଧାନୀ ଭୁବନେଶ୍ୱରଠାରେ ମୂକ ବଧିର ସ୍କୁଲ ପ୍ରତିଷ୍ଠିତ ହେଲା । ଆଧୁନିକ ରୁଚିପୂର୍ଣ୍ଣ ପ୍ରାସାଦରେ ଅନ୍ତେବାସୀ ରହି ବରିଷ୍ଠ ଅଟ୍ଟାଳିକା ଭିତରେ ଓଡ଼ିଶାର ଅସଂଖ୍ୟ ମୂକ ବଧିର ଶିଶୁ ଆଜି ଅଧ୍ୟୟନ ରତ । ଯେଉଁମାନେ ଦିନେ ଭାଗ୍ୟର ଏହି ଉପହାସକୁ ନୀରବରେ ମଥା ପାତି ସହି ନେଇ ନିଜ ପରିବାର କ'ଣ ସମଗ୍ର ସମାଜ ଉପରେ ଗଳଗ୍ରହ ହୋଇ ବସିଥାନ୍ତେ ଆଜି ସେମାନେ ସାଧାରଣ ନାଗରିକଙ୍କ ପରି ଶିକ୍ଷିତ ଏବଂ କର୍ମଠ । ସେମାନଙ୍କ ମଧ୍ୟରୁ ଅନେକ ଆଜି ଉପାର୍ଜ୍ଜନଶୀଳ ଗୃହସ୍ଥ ।

ଏହିଭଳି ଏକ ମହତ କାର୍ଯ୍ୟ ଯେଉଁ ବିପିନ ବିହାରୀଙ୍କ ପାଇଁ ସମ୍ଭବପର ହୋଇଲା ସେ ଆଜି ଓଡ଼ିଶାରେ ଆଉ ଏକ ବ୍ୟକ୍ତି କରିପାରି ନାହାଁନ୍ତି—ଅନୁଷ୍ଠାନରେ ପରିଣତ ହୋଇ ପାରିନାହିଁ ।

ସରକାର ଏହି ବିଦ୍ୟାଳୟର ଦାୟିତ୍ୱ ୧୯୪୬ ମସିହା ଜୁନ ପହିଲା ତାରିଖରୁ ନେବା ଦିନଠାରୁ ୧୯୭୦ ମସିହା ପର୍ଯ୍ୟନ୍ତ ଏହି ବିଦ୍ୟାଳୟର ପରିଚାଳନା ଦାୟିତ୍ୱ ବିପିନ ବିହାରୀଙ୍କ ଉପରେ ରହିଥିଲା । ୧୯୭୦ ମସିହାରେ ଖଲିକୋଟ୍ ଆର୍ଟ କଲେଜ ପ୍ରତିଷ୍ଠିତ ହେବା ପରେ ସେ ଏହି କଲେଜରେ ଗ୍ରାଫିକ୍ ଆର୍ଟ ବିଭାଗରେ ଅଧ୍ୟାପକ ରୂପେ ଯୋଗ ଦେଲେ । କେତେଦିନ ପାଇଁ ସେ ଏହି କଲେଜର ଅଧକ୍ଷ ଦାୟିତ୍ୱରେ ମଧ୍ୟ କାର୍ଯ୍ୟ କରିଥିଲେ ।

ସରକାରୀ ନିୟମ ଅନୁସାରେ ୧୯୭୭ ମସିହାରେ ସେ ସରକାରୀ କାର୍ଯ୍ୟରୁ ଅବସର ଗ୍ରହଣ କରି ବର୍ତ୍ତମାନ ଭୁବନେଶ୍ୱର ଠାରେ ତାଙ୍କ ନିଜ ବାସଭବନରେ ଅବସ୍ଥାନ କରୁଛନ୍ତି ।

ସରକାରୀ ମାପ ଅନୁସାରେ ସେ ସିନା ବାର୍ଦ୍ଧକ୍ୟର ସୀମା ଛୁଇଁଲେ କିନ୍ତୁ ଏ ପର୍ଯ୍ୟନ୍ତ ଏହି ଉଦ୍ୟମୀ ଶିଳ୍ପୀ ତାଙ୍କର କାର୍ଯ୍ୟରୁ ଅବସର ନେଇ ନାହାଁନ୍ତି । ଓଡ଼ିଶାର କଳାର ଉନ୍ନତି ପାଇଁ ବର୍ତ୍ତମାନ ସୁଦ୍ଧା ସେ ଲଳିତ ଏକାଡେମୀଠାରୁ ଉତ୍କଳ ଚିତ୍ରକଳା ପରିଷଦ ପର୍ଯ୍ୟନ୍ତ ବିଭିନ୍ନ ସଂସ୍ଥା ସହିତ ସଂପୃକ୍ତ ଅଛନ୍ତି । ଅନେକ ଚିତ୍ର ପ୍ରତିଯୋଗିତାରେ ବିଚାରକ ରୂପେ ଏବେ ମଧ୍ୟ ଯୋଗଦେଉଛନ୍ତି । ବର୍ତ୍ତମାନ ଫାଇନ୍ ଆର୍ଟ ଓ କ୍ରାଫ୍ଟ ସମ୍ପର୍କୀୟ ପାଠ୍ୟକ୍ରମ ସଂସ୍ଥାର ସେ ଚେୟାରମ୍ୟାନ୍ ଅଛନ୍ତି ।

ବିପିନ ବିହାରୀ ଯଦି କେବଳ ନିଜର ସୁଖ ଇଚ୍ଛା କରିଥାନ୍ତେ ତେବେ ତାଙ୍କର ଛଅଟି ସନ୍ତାନ ସନ୍ତତିଙ୍କ ସହ ସେ ସମାଜରେ ସୁପ୍ରତିଷ୍ଠିତ ହୋଇପାରିଥାନ୍ତେ । ଧନ ଧାନ୍ୟ ଗୋପଲକ୍ଷ୍ମୀ କେଉଁଥିରେ ତାଙ୍କର ଅଭାବ ନ ଥାନ୍ତା । ସେ ନିଜେ ମୂକ ଓ ବଧିର । ତେଣୁ ପ୍ରତ୍ୟେକ ମୂକ ଓ ବଧିରଙ୍କର ଅନ୍ତର ବେଦନା ସେ ମର୍ମେ ଅନୁଭବ କରି ପାରୁଥିଲେ ।

କାହାଣୀରେ ଉପଲବ୍ଧି କରିବା ଯେ କୌଣସି ଜାତିର ନେତାଙ୍କଠାରୁ ତାଙ୍କର ତ୍ୟାଗ ଅପେକ୍ଷା କମ ନୁହେଁ ।

ଏ ଜାତି ତାଙ୍କ ନିକଟରେ ଚିରଦିନ ପାଇଁ ଋଣୀ ରହିବ । ସେ ଆଦର୍ଶରୁ ପୂର୍ଣ୍ଣ ଜୀବନ ଲାଭ କରି ଏ ଜାତିର ସେବାରେ ନିଜକୁ ଉତ୍ସର୍ଗୀକୃତ କରୁଥାନ୍ତୁ, ଏତିକ ଆମର କାମନା ।

ତାଙ୍କର ବୈଚିତ୍ର୍ୟ ପୂର୍ଣ୍ଣ ଏହି ଜୀବନୀ କାହାଣୀ ପଢ଼ିଲେ ଅଭିଜ୍ଞ ସମା-ଲୋଚକଙ୍କର ସେହି ଅମରବାଣୀ ମନେପଡ଼ନ୍ତି —

ମାନବ ଜୀବନ ନୁହଇ କେବଳ
ବର୍ଷ, ମାସ, ଦିନ, ଦଣ୍ଡ
କର୍ମେ ଜୀଏ ନର କର୍ମ ଏକ ମାତ୍ର
ଜୀବନର ମାନଦଣ୍ଡ ।



# ଓଡ଼ିଆ ଅନୁବାଦ ସାହିତ୍ୟ
# ଓ
# ଲାଲ ନଗେନ୍ଦ୍ର କୁମାର ରାୟ

ଅଧ୍ୟାପକ **ମୃତ୍ୟୁଞ୍ଜୟ ନାୟକ**

ଅନୁବାଦର ଅର୍ଥ ହେଉଛି ଭାଷାନ୍ତର ବା ତର୍ଜମା । ପୃଥିବୀରେ ବହୁଭାଷା ପ୍ରଚଳିତ । ଜଣେ ବ୍ୟକ୍ତି ପକ୍ଷରେ ସବୁଭାଷାରେ ଜ୍ଞାନାର୍ଜନ କରି ତଦ୍‌ଦେଶୀୟ ସଂସ୍କୃତିର ବିକାଶକୁ ଜାଣିବା ଏକାନ୍ତ ଅସମ୍ଭବ । ତେଣୁ ଅନୁବାଦ ସାହିତ୍ୟ ବ୍ୟକ୍ତିର ଜ୍ଞାନର ବିକାଶ ଓ ଧର୍ମ ପ୍ରସାରଣ କ୍ଷେତ୍ରରେ ଯେପରି ଆବଶ୍ୟକ, ସେହିପରି ଅପରିହାର୍ଯ୍ୟ ମଧ୍ୟ । ବିଶ୍ୱର ମହାନ ଚିନ୍ତା ଓ ଜ୍ଞାନରାଜିକୁ ହୃଦୟଙ୍ଗମ କରିବାରେ ଅନୁବାଦର ଆବଶ୍ୟକ ସର୍ବାଦୌ ପ୍ରୟୋଜନ ।

ବିଶ୍ୱସାହିତ୍ୟ ଅମର କୃତିକୁ ଜାଣିବା, ବିଶ୍ୱଚିନ୍ତାନାୟକଙ୍କ ଭାବ ଓ ଭାଷା ସଙ୍ଗେ ସଂପର୍କ ସ୍ଥାପନ କରିବା, ଛନ୍ଦ ଓ ଭାବଆହରଣ ପୂର୍ବକ ନିଜ ନିଜ ସାହିତ୍ୟକୁ ସମୃଦ୍ଧ କରିବା, ନିଜ ସାହିତ୍ୟ ସଙ୍ଗେ ବିଶ୍ୱ ସାହିତ୍ୟକୁ ତୁଳନା କରିବା, ବିଭିନ୍ନ ଯୁଗ ସାହିତ୍ୟ ସଙ୍ଗେ ତଥା ବିଶ୍ୱର ବିଭିନ୍ନ ଜାତି ଓ ଭାଷାଭାଷୀମାନଙ୍କ ସହ ଯୋଗସୂତ୍ର ସ୍ଥାପନ କରିବାରେ ଅନୁବାଦ ସାହିତ୍ୟ ଯୋଗୁଁ ଆଞ୍ଚଳିକତା ମନୋଭାବ ଦୂରୀଭୂତ ହୋଇ ମଣିଷ ବିଶ୍ୱମୁଖୀ ହୁଏ । ଜର୍ମାନ କବି ଗେଟେ, ଇଂରେଜ କବି କିଟସ୍ ଓ ମାଥ୍ୟୁ ଆର୍ନୋଲଡ୍

କାଳିଦାସଙ୍କର ଅନୁବାଦ ନାହିଁ ଅନୁସୃତ କରି ନିଜ ସାହିତ୍ୟରେ ତାହା ପ୍ରତିଫଳିତ କରିଛନ୍ତି । 'Great men think alike' ଯେପରି ବହୁ ସାହିତ୍ୟ ଅନୁକୂଳରେ ଦେଖିବାକୁ ମିଳେ ।

ଅନୁବାଦ ବିବିଧ ପ୍ରକାରରେ ହୋଇପାରିବ ଯଥା—(୧) ଆକ୍ଷରିକ ଅନୁବାଦ (୨) ଭାବ ବା ଭାବାନୁବାଦ (୩) ଅର୍ଥାନୁଯାୟୀ ଭାବାନୁଯାୟୀ ଅନୁବାଦ । ସଠିକ୍ ରୂପେ ଏହିପରି କୌଣସି ଅନୁବାଦରେ ଲକ୍ଷ୍ୟ । ଓଡ଼ିଆ ସାହିତ୍ୟରେ ପ୍ରାଚୀନ ଯୁଗରୁ ଆଧୁନିକ ଅନୁକରଣ, ଅନୁସରଣ, ଛାୟାନୁସରଣ, ଭାବାନୁସରଣ, ଅର୍ଥାନୁସରଣ ଓ ଆକ୍ଷରିକ ଭେଦରେ ଅନୁବାଦ କୌଶଳ ଅବଲମ୍ବିତ ହୋଇ ଆସିଛି ।

## ଶିଳ୍ପ କୌଶଳ—

ଅନୁବାଦ ଏକ କଷ୍ଟସାଧ୍ୟ କଳା । ଅନୁବାଦକଙ୍କର ନିଜ ମାତୃଭାଷା ଓ ଅନୁବାଦ କରିଥିବା ସାହିତ୍ୟର ଭାଷା ଉପରେ ଦକ୍ଷତା ଥିବା ଉଚିତ । ତା ସହିତ ଅନୁବାଦ କରୁଥିବା ସାହିତ୍ୟର ଶୋଭନୀୟ ଓ ବାସ୍ତବ ରୂପାୟନ ଲାଗି ସେହି ଦେଶର ସଭ୍ୟତା, ସଂସ୍କୃତି, ଇତିହାସ ଓ ସାମାଜିକ ଜୀବନଧାରା ସମ୍ବନ୍ଧରେ ଜ୍ଞାନ ଥିବା ଆବଶ୍ୟକ । କେବଳ ଆକ୍ଷରିକ ଅନୁବାଦକୁ ଲକ୍ଷ୍ୟ ଦେଲେ ତାହା ନୀରସ ଓ ଦୁର୍ବୋଧ ହୋଇପଡ଼ିବ । ଅନୁବାଦକୁ ସରସ ସୁନ୍ଦର କରିବାକୁ ହେଲେ ଅନୁବାଦକର ରସାନୁଭୂତି ଓ ଭାବାନୁଭୂତି ଥିବା ଦରକାର । ଅର୍ଥର ସାର୍ଥକ ପ୍ରକାଶ ଅନୁବାଦକର ଧର୍ମ ହୋଇଥିବାରୁ କୌଣସି ଦେଶର ପ୍ରକୃତ ମର୍ମ ନିଜ ଭାଷାରେ କିପରି ଫୁଟିପାରିବ ଓ ବାକ୍ୟଗଠନ ଶୁଦ୍ଧ ହେବ ସେଥିପ୍ରତି ଲକ୍ଷ୍ୟ ଦେବାକୁ ହେବ ।

ଓଡ଼ିଆ ଭାଷା ଓ ଅନୁବାଦ—କଳା ଅନଭିଜ୍ଞ ପାଦ୍ରୀଙ୍କର ବାଇବେଲ ଅନୁବାଦ କିମ୍ଭୂତକିମ୍ଭାକାର ଓ ହାସ୍ୟୋଦ୍ଦୀପକ ହୋଇଥିଲା । ଅନେକ ସମୟରେ ଭାଷାନ୍ତରିତ କଲାବେଳେ ଅନୁରୂପ—ଅର୍ଥ ବୋଧକ ଶବ୍ଦ ମିଳେ ନାହିଁ । ସେପରି ସ୍ଥଳରେ ନିକଟତମ ଅର୍ଥ—ପ୍ରକାଶକ ଭାବାନୁବାଦକୁ ନେବାକୁ ହେବ । [illegible]

ଧାଳ ପ୍ରକାରରେ ପ୍ରକାଶିତ ଅନୁବାଦ ଓ ଏକାଡେମୀ ପ୍ରବନ୍ଧରେ ଉଦାହରଣ ମାନଙ୍କରେ ଏହି କଥାକୁ ଦେଖାଇବାକୁ ଯାଇ କହିଛନ୍ତି—ଭାଷାର ପ୍ରାଣଚ୍ଛନ୍ଦ ଅନୁଭବ କରି ନପାରିଲେ ଅନୁବାଦ ନିର୍ଜୀବ ହୋଇପଡ଼େ । ଅନୁବାଦ ସମ୍ପର୍କରେ ଡ୍ରାଇଡେନ ନିଜର ମତଦାନ କରି କହିଛନ୍ତି—ମୌଳିକ ଲେଖାରେ ଥିବା ଭାବମାନଙ୍କୁ ଅନୁବାଦରେ ଅବିକଳ ପ୍ରକାଶ କରିବା ଉଚିତ । ତେଣୁ ଯେଉଁ ଅନୁବାଦ କରୁଥିବା ବ୍ୟକ୍ତି ଲେଖକର ଭାବଧାରାରେ ନିଜର ସ୍ୱାତନ୍ତ୍ର୍ୟ ହରାଇ ବସେ ।

ଅନୁବାଦକର ପ୍ରଭୂତ ଅନୁଶୀଳନ ଓ ସାବଧାନତା ଦରକାର । ସାଧୁଭାଷା (Standard language) ଗ୍ରନ୍ଥର ଅନୁବାଦ ଯେପରି ସହଜସାଧ୍ୟ ଲୋକ କଥିତ ଓ ଲୋକ ପ୍ରଚଳିତ ଭାଷା (Colloquial) ଗ୍ରନ୍ଥର ଅନୁବାଦ ଅତ୍ୟନ୍ତ କଷ୍ଟସାଧ୍ୟ । ପ୍ରତ୍ୟେକ ଦେଶର ସାହିତ୍ୟରେ ଦେଶଜ ଶବ୍ଦ, ପ୍ରବାଦ ପ୍ରବଚନ ଓ ଜନଶ୍ରୁତି ପ୍ରୟୋଗ ଥାଏ । ଉଦାହରଣ ସ୍ୱରୂପ ମେଣ୍ଢା, ଢ଼ୁଲଢୁଲି, ସାନ୍ତିମଙ୍ଗୁଳା ପ୍ରଭୃତିକୁ ଅନୁବାଦ କରିବା ଜଣେ ବିଦେଶୀ ପକ୍ଷରେ ଅସମ୍ଭବ । ସେପରିସ୍ଥଳେ ଭାଷାର ମର୍ମ ଓ ସୌନ୍ଦର୍ଯ୍ୟ ପ୍ରତି ଦୃଷ୍ଟିଦେବା ଆବଶ୍ୟକ । ଛନ୍ଦୋବଦ୍ଧ କାବ୍ୟ କବିତା ଅନୁବାଦ ମଧ୍ୟ କଷ୍ଟକର ବ୍ୟାପାର । ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟମାନଙ୍କର ଅନୁବାଦ ଯଦି ଅଭିଜ୍ଞ କଳାକୁଶଳୀ ଅନୁଦବାଦକ ହାତରେ ନହେବ ତାହାହେଲେ କାବ୍ୟର ଭାବସୌନ୍ଦର୍ଯ୍ୟ ଓ ରସମାଧୁର୍ଯ୍ୟ ନଷ୍ଟ ହେବା ସ୍ୱାଭାବିକ; ତେଣୁ ସାହିତ୍ୟର ଅନ୍ୟାନ୍ୟ ବିଭାଗ ଅପେକ୍ଷା କାବ୍ୟ କବିତାରେ ମର୍ମାନୁବାଦ ଅଧିକ ଶ୍ଳାଘ୍ୟ ହୋଇଥାଏ । ଅନୁବାଦକର ଏ କ୍ଷେତ୍ରରେ ସାମାନ୍ୟ ସ୍ୱାଧୀନତା ଥିଲେହେଁ ଭାଷାର ମୌଳିକତା ପ୍ରତି ସୁ-ଦୃଷ୍ଟି ଦେବା ବାଞ୍ଛନୀୟ । ଗଦ୍ୟାନୁବାଦ ସାଧାରଣତଃ ସହଜ । ଦେଶ, କାଳ ଓ ରୁଚି ଭେଦରେ ମଧ୍ୟ ଅନୁବାଦ କଳା ନିୟନ୍ତ୍ରିତ ହୋଇଥାଏ । ଉଡ୍ରୋ ଉଇଲସନଙ୍କ ମତରେ ଅନୁବାଦ ପାଠ କରିବା ଅର୍ଥ ମୂଳ ଗ୍ରନ୍ଥର ଅବିକୃତ ଓ ବିକଳାଙ୍ଗ ରୂପ ଦେଖିବା । ମାତ୍ର ଉଚ୍ଚକୋଟୀର ଅନୁବାଦକଙ୍କ ହସ୍ତରେ ସମୟେ ସମୟେ ମୂଳ ଲେଖା ଅନୁବାଦରେ ଅଧିକ ଶୋଭନୀୟ ରୂପରେ ପ୍ରକାଶିତ ହୁଏ ।

ତେଣୁ ସାହିତ୍ୟରେ ଅଙ୍ଗିକ ସୌନ୍ଦର୍ଯ୍ୟ ଅପେକ୍ଷା ଆତ୍ମିକ ସୌନ୍ଦର୍ଯ୍ୟ ଅଧିକ କାମ୍ୟ ହୋଇଥିବାରୁ ଭାଷା ଓ ଭାବ ମିଶ୍ରିତ ସାହିତ୍ୟ ଅପେକ୍ଷା ଭାବର ସ୍ୱ-ସ୍ପନ୍ଦନ ନ ସ୍ୱ-ସ୍ପନ୍ଦନ, ପ୍ରକାଶ ସାହିତ୍ୟକ ସୌନ୍ଦର୍ଯ୍ୟକୁ ବୃଦ୍ଧି କରିଥାଏ । ସେଥିପାଇଁ ଅନୁବାଦକଗଣ ଭାଷା ଓ ଭାବ ସୌନ୍ଦର୍ଯ୍ୟକୁ ଆଖି ଆଗରେ ରଖି ଅନୁବାଦରେ ମନୋନିବେଶ କରିବା ଉଚିତ । କେବଳ ଅର୍ଥଲାଭ ଆକାଂକ୍ଷା ନୁହେଁ ସାର୍ଥକ ଅନୁବାଦକ ହେବାକୁ ହେଲେ ବହୁଦର୍ଶୀ ବିଦଗ୍ଧ ପାଠକ ଓ ଜିଜ୍ଞାସୁ ଗ୍ରାହିତ ମନୋବୃତ୍ତି ନେଇ କାର୍ଯ୍ୟ କରିବାକୁ ହେବ । ଅନୁବାଦ ସାହିତ୍ୟରେ ମଧ୍ୟ ନିଜର ସର୍ଜନାତ୍ମକ ଗୁଣର ପରିପ୍ରକାଶ କରିବାକୁ ହେବ ।

ଆଧୁନିକ ଯୁଗରେ ବିଶ୍ୱର ପ୍ରତ୍ୟେକ ଦେଶର ଚିନ୍ତାର ସହିତ ସମ୍ପର୍କ ରଖିବା ଏକାନ୍ତ ଆବଶ୍ୟକ ଦୃଷ୍ଟିରୁ ସାହିତ୍ୟରେ ଅନୁବାଦର ଆବଶ୍ୟକତା ସେତିକି ବୃଦ୍ଧିପ୍ରାପ୍ତ ହୋଇଛି ଓ ହେବା—ଉଚିତ ମଧ୍ୟ । ଅନୁବାଦ ଫଳରେ ନିଜ ଭାଷା ସାହିତ୍ୟର ନୂତନ ଧନ ଆହରଣରେ ଶ୍ରୀବୃଦ୍ଧି ଘଟିଥାଏ । ତେଣୁ ଅନୁବାଦକର ଧୈର୍ଯ୍ୟର ମନୋନିବେଶ ଓ ଧୈର୍ଯ୍ୟ ଓ ଅନୁସନ୍ଧିତ୍ସା ଆବଶ୍ୟକ ।

## ଅନୁବାଦର କ୍ରମବିକାଶ :—

ପ୍ରାଚୀନ ସାହିତ୍ୟରେ ବିଂଶ ଶତାବ୍ଦୀରୁ ଅନୁବାଦ କାର୍ଯ୍ୟ ହୋଇ ଆସୁଅଛି । ବିଶେଷ ଭାବରେ ସମୃଦ୍ଧ ଇଂରେଜ ଜାତି—ବିଶ୍ୱଜ୍ଞାନ ଆହରଣ ପୂର୍ବକ ନିଜ ସାହିତ୍ୟର ସମୃଦ୍ଧି ଘଟାଇବା ପାଇଁ ବହୁଦିନରୁ ଅଦମ୍ୟ ପ୍ରଚେଷ୍ଟା ଆରମ୍ଭ କରିଛନ୍ତି । ଏପରିକି ଭାରତୀୟ ବେଦ, ପୁରାଣ—ସାହିତ୍ୟର ଚର୍ଚ୍ଚା ଇଂରେଜ, ଜର୍ମାନୀ ପ୍ରଭୃତି ଦେଶରେ ଯେତେ ପରିମାଣରେ ଆଲୋଚିତ ହେଉଛି ତାହା ଆମ ଦେଶରେ ହୋଇନାହିଁ । ଆମ ଦେଶର ଭାଷା, ସାହିତ୍ୟରେ ସେଠାରେ ଉଚ୍ଚକୋଟୀର ବିଶେଷଜ୍ଞ ଦେଖାଯାନ୍ତି । ବିଶେଷତଃ ଅନୁବାଦ ସାହିତ୍ୟର ପ୍ରକୃତ ବିକାଶ ରାଧାନାଥ ଯୁଗରୁ ଆରମ୍ଭ ହୋଇ ସମକାଳୀନ ଯୁଗରେ ପୂର୍ଣ୍ଣାଙ୍ଗ ରୂପ ନେବାରେ ସକ୍ଷମ ହୋଇଛି ।

ବର୍ତ୍ତମାନ ସାହିତ୍ୟର ପ୍ରତ୍ୟେକ ବିଭାଗରେ ଅନୁବାଦ ଗ୍ରନ୍ଥ ପ୍ରକାଶିତ ହେଲାଣି ।

ଭାରତୀୟ ଓ ପ୍ରାଦେଶିକ ଦୃଷ୍ଟିରୁ ସମୁଦାୟ ଭାରତବର୍ଷରେ ଏକ ଭାବ-ଐକ୍ୟ ପ୍ରତିଷ୍ଠିତ ହୋଇଥିବାରୁ ପ୍ରାନ୍ତୀୟ ଭାଷାକୁ ଅନୁବାଦ କରିବା ଅପେକ୍ଷାକୃତ ସହଜ । ଦେବଭାଷା ସଂସ୍କୃତ ଓ ତା'ର ମହିମାମଣ୍ଡିତ ସାହିତ୍ୟ ସମ୍ଭାର ଉଭୟ ଉତ୍ତର ଓ ଦକ୍ଷିଣ ଭାରତରେ ତାହାର ଏକଚ୍ଛତ୍ର ପ୍ରଭାବ ବିସ୍ତାର କରିଥିବାରୁ ପ୍ରାଚୀନ ଓ ମଧ୍ୟ ଯୁଗରେ ସଂସ୍କୃତ ଗ୍ରନ୍ଥରୁ ଅନୁବାଦ, ଭାବ ବା ମର୍ମାନୁବାଦ, ଅନୁକରଣ, ଅବଲମ୍ବନ ଓ ଗ୍ରାସ୍ୟାନୁକରଣ ଏକାନ୍ତ ଆବଶ୍ୟକ ବୋଧ ହୋଇଛି । ମର୍ମାନୁବାଦରେ ବର୍ଣ୍ଣନା ଓ ଚରିତ୍ର ଚିତ୍ରଣ କ୍ଷେତ୍ରରେ ଅନୁବାଦକ ସ୍ୱାଧୀନତା ଲାଭ କରିଥାଏ । ଏହାର ଜ୍ୱଳନ୍ତ ପ୍ରମାଣ ସାରଳା ମହାଭାରତ ଓ ଭାଗବତ ପ୍ରଭୃତି ।

ଅନୁବାଦ ସାହିତ୍ୟର ଇତିହାସକୁ ମୁଖ୍ୟତଃ ତିନୋଟି ଭାଗରେ ବିଭକ୍ତ କରାଯାଇପାରେ । (୧) ପ୍ରାଚୀନ ଓ ମଧ୍ୟଯୁଗର ଅନୁବାଦ ସାହିତ୍ୟ (୨) ଊନବିଂଶ ଶତାବ୍ଦୀର ଅନୁବାଦ ସାହିତ୍ୟ (୩) ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ଓ ସ୍ୱାଧୀନତା ପରବର୍ତ୍ତୀ ଅନୁବାଦ ଯୁଗ ।

ପ୍ରାଚୀନ ଓ ମଧ୍ୟଯୁଗର ଅନୁବାଦ ସାହିତ୍ୟ ମୁଖ୍ୟତଃ ବେଦ, ପୁରାଣ ଓ ସଂସ୍କୃତ କାବ୍ୟ କବିତା ଓ ବଙ୍ଗ ସାହିତ୍ୟ ଅନୁବାଦରେ ସୀମିତ । ବେଦ ସାହିତ୍ୟ ପୁରାଣ ଇତିହାସ ମାଧ୍ୟମରେ ଧର୍ମ ସାପେକ୍ଷ ହେବାରୁ ଧାର୍ମିକ ଜନଜୀବନରେ ତାହାର ଅଜସ୍ର ପ୍ରଭାବ ଅନୁଭୂତ ହେଲା । ଫଳରେ ପ୍ରାନ୍ତୀୟ ସାହିତ୍ୟମାନଙ୍କରେ ସଂସ୍କୃତ ସାହିତ୍ୟର ଅନୁଶୀଳନ ଓ ଅନୁବାଦର ଆବଶ୍ୟକତା ଦେଖିବାକୁ ମିଳେ; ଇଂରେଜ ପାଦ୍ରୀମାନଙ୍କର ବାଇବେଲ ଧର୍ମଗ୍ରନ୍ଥମାନଙ୍କର ଅନୁବାଦ ପର୍ଯ୍ୟନ୍ତ ଏହି ସଂସ୍କୃତ ଅନୁବାଦ ସ୍ରୋତ ଓଡ଼ିଆ ସାହିତ୍ୟର କଳେବରରେ ରହିଥିଲା । ଏପରି କି ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧ ପର୍ଯ୍ୟନ୍ତ ଏହି ସ୍ରୋତ ଅନୁସୃତ ହେବାର ଦେଖିବାକୁ ମିଳିଥାଏ । ଏପରି କି ରାଧାନାଥ ଓ ସତ୍ୟବାଦୀର ସାଧକମାନେ ସଂସ୍କୃତ ସାହିତ୍ୟର ଅନୁବାଦ ପ୍ରତି ଆକୃଷ୍ଟ ଥିଲେ । କାଁ-ଭାଁ ଆଜିକାଲି ମଧ୍ୟ ସଂସ୍କୃତ ସାହିତ୍ୟର

ଅନୁବାଦ ତାହାର ପ୍ରତିଭାତ ଗୁଣକୁ ଅବ୍ୟାହତ ରଖିଅଛି । ଓଡ଼ିଶା ତଥା ଭାରତର ସାହିତ୍ୟ ଏକାଡେମୀ ପ୍ରମୁଖ ସଂସ୍ଥାନ ଗ୍ରନ୍ଥର ଅନୁବାଦରେ ଦୃଷ୍ଟି ନିକ୍ଷେପ କରନ୍ତି ।

ଖ୍ରୀଷ୍ଟୀୟ ମିସନାରୀମାନେ ଊନବିଂଶ ଶତକର ପ୍ରଥମ ପାଦରେ ଓଡ଼ିଆରେ ବାଇବେଲ ଓ ଖ୍ରୀଷ୍ଟ ଧର୍ମଗ୍ରନ୍ଥ ଅନୁବାଦ କଲେ । ୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶାକୁ ଆସିଥିଲେ । ମୁଦ୍ରାଯନ୍ତ୍ରର ପ୍ରତିଷ୍ଠାର ସୁଯୋଗ ଫଳରେ ଅନ୍ୟ ସାହିତ୍ୟର ଅନୁବାଦ ସୁଗମ ହୋଇପାରିଲା । ପାଦ୍ରୀମାନେ ପାଠ୍ୟପୁସ୍ତକ ଓ ଆଇନ ପୁସ୍ତକ ମଧ୍ୟ ଅନୁବାଦ କରିଥିଲେ । ଓଡ଼ିଆ ଗଦ୍ୟ ସାହିତ୍ୟର ଆଦି ପ୍ରବର୍ତ୍ତକର ଗୌରବ ପାଦ୍ରୀମାନେହିଁ ପାଇଥାନ୍ତି । ମାତ୍ର ଓଡ଼ିଆ ଭାଷାରେ ଦଖଲ ନ ଥିବାରୁ ବିକୃତ ପଦପ୍ରୟୋଗ ଓ ଇଂରେଜୀ ବାକ୍ୟ ଗଠନ ଶୈଳୀକୁ ଅନୁସରଣ କରିବା ଦ୍ୱାରା ଅନୁବାଦ-ସମୂହ ଅବୋଧ ଓ କିମ୍ଭୂତକିମାକାର ରୂପ ଧାରଣ କରିଥିଲା ।

ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧ ହେଉଛି ଆଧୁନିକ ଓଡ଼ିଆ ସାହିତ୍ୟର ସଙ୍ଗଠନର ଯୁଗ । ବଙ୍ଗାଳିମାନଙ୍କ ଚକ୍ରାନ୍ତରୁ ଓଡ଼ିଆ ଭାଷାକୁ ରକ୍ଷା କରିବା ସଙ୍ଗେ ସଙ୍ଗେ ଅବହେଳିତ ଓଡ଼ିଆ ଭାଷା ସାହିତ୍ୟର ଉନ୍ନତି ଲାଗି ବହୁ ପ୍ରଚେଷ୍ଟା ହୋଇଅଛି । ଯୁଗରୁଚି ବଦଳିବା ସଙ୍ଗେ-ସଙ୍ଗେ ଲେଖକଗଣ ପାଶ୍ଚାତ୍ୟ ସାହିତ୍ୟ ପ୍ରତି ଦୃଷ୍ଟି ପ୍ରସାରଣ କରନ୍ତି । ଯଥାର୍ଥ ଅନୁବାଦ ଦୃଷ୍ଟିରୁ ବିଚାର କଲେ ରାଧାନାଥ ହେଉଛନ୍ତି ଆଧୁନିକ ଯୁଗର ପ୍ରକୃଷ୍ଟ ଓ ପ୍ରଥମ ଅନୁବାଦକ । ସୌନ୍ଦର୍ଯ୍ୟର ଉପାସକ ରାଧାନାଥ ପ୍ରାଚ୍ୟରୁ କାଳିଦାସ ଓ ପାଶ୍ଚାତ୍ୟ ସାହିତ୍ୟରୁ ଓଭିଡଙ୍କର ଲେଖା ଦ୍ୱାରା ପ୍ରଭାବିତ । ସେହିପରି ଭକ୍ତକବି ମଧୁସୂଦନ ମାତୃବାଣୀ ଦୃଷ୍ଟିକୋଣରୁ ଭବଭୂତି ଓ କୁପରଙ୍କୁ ଅନୁସରଣ କରନ୍ତି ; ମାତ୍ର ଫକୀରମୋହନ ପୁରାଣ ସାହିତ୍ୟର ଅନୁବାଦରେ ଦୃଷ୍ଟି ନିବଦ୍ଧ କରନ୍ତି ।

ଏହି ସମୟରେ କେତେକ ରାଜା ଓ ଧନାଢ୍ୟ ବ୍ୟକ୍ତି ବିଭିନ୍ନ ସଂସ୍କୃତ ଗ୍ରନ୍ଥ ଓ ଶାସ୍ତ୍ରକୁ ଅନୁବାଦ କରାଇ ପ୍ରସାର ଘଟାଇଛନ୍ତି । ସେମାନଙ୍କ ମଧ୍ୟରେ ତାଳଚେର ଓ ବାମଣ୍ଡା ରାଜା ଓ ବହାରିଲାଲ ପଣ୍ଡିତଙ୍କ ନାମ

ଉଲ୍ଲେଖଯୋଗ୍ୟ । ଊନବିଂଶ ଶତାବ୍ଦୀରେ ସଂସ୍କୃତ, ବଙ୍ଗଳା ଓ ଇଂରେଜୀ ଭାଷାରୁ ଅନେକ ଉପାଦେୟ ପୁସ୍ତକ ଅନୂଦିତ ହୋଇଅଛି ।

ବିଂଶ ଶତକର ପ୍ରଥମାର୍ଦ୍ଧରେ ବିଶେଷ ଭାବରେ ସତ୍ୟବାଦୀ ଯୁଗରେ ଜାତୀୟ ଭାବରେ ଲେଖକଗଣ ଅନୁପ୍ରାଣିତ ହେଉଥିଲେ। ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ [୧୮୧୭, ନବାସିତା] ଓ ପଣ୍ଡିତ ନୀଳକଣ୍ଠଙ୍କ [ଦାସ ନାଟକ] ବିଦେଶୀ ସାହିତ୍ୟ ଅନୁସରଣରେ ରଚିତ ହୋଇଥିଲେହେଁ ଓଡ଼ିଶାର ପରିବେଶ, ଇତିହାସ, ପ୍ରକୃତି, ପରିବେଶ ଏପରି କି ଚରିତ୍ର-ଗୁଡ଼ିକର ଓଡ଼ିଆ ନାମ ରୂପାନ୍ତର ଘଟିଛି । ଭାଷା ଓ ଭାବର ସ୍ୱଚ୍ଛନ୍ଦ ପ୍ରବାହ ଏଥିରେ ଘଟିଛି । ଏହି ଯୁଗରେ ବହୁ ସଂସ୍କୃତ ଗ୍ରନ୍ଥର ଅନୁବାଦକ ଭାବରେ ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମା ଓ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ସୁନାମ ଅର୍ଜନ କରିଛନ୍ତି । ଏହାର ପରବର୍ତ୍ତୀ ସମୟରେ ଅମରବଲ୍ଲଭ ଦେ ଓ ଉଦୟନାଥ ଷଡ଼ଙ୍ଗୀ ଅନୁବାଦ କ୍ଷେତ୍ରରେ ନିଜର ସ୍ୱତନ୍ତ୍ର ଆସନ ଦାବୀ କରନ୍ତି ।

ସ୍ୱାଧୀନତା ପରବର୍ତ୍ତୀ ଯୁଗରେ ମଣିଷ ମନର ମୁକ୍ତ ଚିନ୍ତାଧାରା ଦିଗନ୍ତ ବିସ୍ତାରୀ ହୋଇଛି । ଫଳରେ ବିଶ୍ୱର ପ୍ରତ୍ୟେକ ସାହିତ୍ୟ ଓ ଚିନ୍ତାଗଙ୍ଗା ସହ ସଂଯୋଗ ଓ ସମ୍ପର୍କ ବିସ୍ତାର କରିବାକୁ ନିଜ ମନର ବ୍ୟାକୁଳତାଭାବ ପ୍ରକାଶ ପାଇଛି । ଫଳରେ ହିନ୍ଦୀ, ବଙ୍ଗଳା, ସଂସ୍କୃତ ସମେତ ପୃଥିବୀର ପ୍ରସିଦ୍ଧ ଭାଷା ସାହିତ୍ୟର ଅନୁବାଦ ଓ ଅନୁଶୀଳନ ସାହିତ୍ୟର ଅପରିହାର୍ଯ୍ୟ ଅଙ୍ଗ ରୂପେ ବିବେଚିତ ହୋଇଛି । ଆମ ଯୁଗରେ କାବ୍ୟକବିତା, ନାଟକ ଅପେକ୍ଷା ପ୍ରବନ୍ଧ, ଉପନ୍ୟାସ ଓ ଗଳ୍ପ ବହୁ ଭାବରେ ଅନୂଦିତ ହୋଇ ପ୍ରସାର ଲଭ କରୁଛି । ଅନୁବାଦ ସାହିତ୍ୟର ପ୍ରସାର ଓ ପ୍ରଚାର ଲାଗି ବହୁ ପ୍ରକାଶକ ଓ ଅନୁବାଦକଗଣ ଆଗ୍ରହୀ ହେଲେଣି । ମନମୋହନ ପୁସ୍ତକାଳୟର ମାଲିକ ଓ ପ୍ରକାଶକ ପ୍ରଫୁଲ୍ଲ କୁମାର ଦାସ ଏ କ୍ଷେତ୍ରରେ ଅଧିକ ମନୋନିବେଶ କରିଛନ୍ତି । ମନମୋହନ ପୁସ୍ତକାଳୟ ଆନୁକୂଲ୍ୟରୁ ଲଲ୍ ନଗେନ୍ଦ୍ର କୁମାର ରାୟ ବିଶ୍ୱବିଶ୍ରୁତ ନୋବେଲ ପୁରସ୍କାରପ୍ରାପ୍ତ ଉପନ୍ୟାସର ଅନୁବାଦକ ଭାବେ କୃତିତ୍ୱ ଅର୍ଜନ କରିଛନ୍ତି । ପ୍ରକାଶକ

ଉତ୍ପଳକୁମାର ଦାସ ମୂଳ ଗ୍ରନ୍ଥର ଲେଖକମାନଙ୍କର ସ୍ୱତନ୍ତ୍ର ମୁଖବନ୍ଧ ଲେଖାଇବା ଦ୍ୱାରା ଅନୁବାଦ କ୍ଷେତ୍ରରେ ଏକ ନୂତନ ପରମ୍ପରା ସୃଷ୍ଟି କରିଛନ୍ତି ।

ଅନୁବାଦ କ୍ଷେତ୍ରରେ ସାହିତ୍ୟିକ ଟିପ୍ପଣୀ କାଳ ନିରୂପଣ ସହିତ ମୂଳ ଲେଖକଙ୍କ ପରିଚୟ ଦିଆଗଲେ ଏହା ପାଠକର ଜିଜ୍ଞାସାବୃତ୍ତିକୁ ଉଦ୍ଦୀପ୍ତ କରିବାରେ ସାହାଯ୍ୟ କରିବ । ଅନୁବାଦ ଯେପରି ନିର୍ଭୁଲ ସଠିକ୍ ଯେଉଁ ଭାଷାରେ ଅନୁବାଦ ହେବ ତାହା ଯେପରି ସରଳ, ଜନପ୍ରିୟ ହୋଇ ପାରିବ ସେଥିପ୍ରତି ଦୃଷ୍ଟି ଦେବା ବାଞ୍ଛନୀୟ । ଜଣେ ପାଶ୍ଚାତ୍ୟ ସମାଲୋଚକଙ୍କ ମତରେ ଅନୁବାଦ ହେଉଛି ଲେଖକ ଓ ଅନୁବାଦକର ମିଳିତ ମାନସର ସମ୍ମିଳିତ ଏକ ସମନ୍ୱିତ ସୃଷ୍ଟି । ଅନୁବାଦ ସାହିତ୍ୟକୁ ଭୂରିକର ଓ ମର୍ଯ୍ୟାଦା ସମ୍ପନ୍ନ କରିବା ପାଇଁ ଅନେକ କୃତବିଦ୍ୟ ଅନୁବାଦକଙ୍କ ପ୍ରଚେଷ୍ଟା ଅଭିନନ୍ଦନୀୟ ।

ବିଗତ ୩୦ ବର୍ଷ ଭିତରେ ଓଡ଼ିଆ ଅନୁବାଦ ସାହିତ୍ୟର ଯଥେଷ୍ଟ ପ୍ରଗତି ଘଟିବାରେ ଲାଗିଛି । ଅନୁବାଦ ସାହିତ୍ୟର ବିକାଶ ଓ ପ୍ରକାଶ ତାହାର ଅଗ୍ରଗତିର ପରିଚାୟକ । ପ୍ରସିଦ୍ଧ ଅନୁବାଦକଙ୍କ ହସ୍ତରେ ମୂଳ-ଗ୍ରନ୍ଥର ଲେଖକଙ୍କର ଭାବ ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟ ସୁରକ୍ଷିତ ହୋଇ ପାଠକର ଚିତ୍ତକୁ ଆକୃଷ୍ଟ କରୁଅଛି । ତେଣୁ କେବଳ ଅର୍ଥପ୍ରାପ୍ତି ଆଶାରେ ନୁହେଁ ଅନୁବାଦର ସାର୍ଥକତା ରକ୍ଷା କରି ଅନୁବାଦକଗଣ ପାଠକର ମନସ୍ତୁଷ୍ଟି ଦିଗରେ ସମଧିକ ଧ୍ୟାନ ଦେବା ବିଧେୟ ।

୧୯ଶ ଶତାବ୍ଦୀରୁ ବିଂଶଶତାବ୍ଦୀର ତୃତୀୟାର୍ଦ୍ଧ ପର୍ଯ୍ୟନ୍ତ ଅନୁବାଦ ସାହିତ୍ୟ ବହୁ ରୂପରେ ଓ ବହୁ ଭାବରେ ପ୍ରକାଶିତ ହୋଇ ଆସିଅଛି । ଆଲୋଚନାର କଳେବର ବୃଦ୍ଧି ଦୃଷ୍ଟିରୁ ଯୁଗ ଓ ବିଷୟ ଭିତ୍ତିକ ରୂପରେ ପ୍ରସିଦ୍ଧ ଅନୁବାଦକ ଓ ଅନୁଦିତ ଗ୍ରନ୍ଥର ସୂଚନା ପାଠକର ଅବଗତି ଓ ସୁବିଧା ନିମନ୍ତେ ସଙ୍କ୍ଷିପ୍ତୀକରଣ କରି ନିମ୍ନରେ ପ୍ରଦତ୍ତ ହେଲା । ଯେଉଁମାନଙ୍କର ନାମ ଓ ଗ୍ରନ୍ଥସୂଚନା ଦିଆଯାଇ ପାରୁନାହିଁ ସେମାନଙ୍କ ସାଧନା ଓ

ଅବହେଳିତ ଏକଥା କୁହାଯାଇ ପାରେନା । ସ୍ୱଦେଶୀ ଓ ବିଦେଶୀ ସାହିତ୍ୟ ବିବିଧ ବିବେଚନାମତେ ଏଠାରେ ବିବରଣୀ ପ୍ରଦାନ କରାଗଲା ।

## ସ୍ୱଦେଶୀ ସାହିତ୍ୟ—

ପୁରାଣ ଓ କାବ୍ୟ କବିତା—

ଓଃ ଓ ଧରମାର ସଂସ୍କୃତି ଭାରତୀୟଙ୍କ ପକ୍ଷେ ବେଦ, ଉପନିଷଦ୍, ଗୀତ, ପୁରାଣ ଓ ସଂସ୍କୃତ କାବ୍ୟଶାସ୍ତ୍ର ସାର୍ବଜନୀନ ଓ ସାର୍ବକାଳୀନ ଅବଦାନ ଓ ପ୍ରଭାବକୁ ଏଡ଼ାଇ ଦେବା ସହଜ କଥା ନୁହେଁ । ୧୫ଶ ଓ ୧୬ଶ ଶତାବ୍ଦୀରେ ସଂସ୍କୃତ କାବ୍ୟାନୁସରଣରେ ରଚିତ ପୁରାଣ—ସାରଳାଙ୍କ ମହାଭାରତ, ବଳରାମଙ୍କ ଦାଣ୍ଡୀରାମାୟଣ ଓ ଜଗନ୍ନାଥଙ୍କ ଭାଗବତ ଏବେ ବି ଓଡ଼ିଶାରେ ଘରେ ଘରେ ପୂଜିତ । ଅଧ୍ୟାପକ ଅଭିମନ୍ୟୁ ସାହୁଙ୍କ ମତରେ "ଏମାନଙ୍କର ଅନୁବାଦ ବ୍ୟାସ ବାଲ୍ମୀକିଙ୍କର ଗ୍ରନ୍ଥ ଠିକ ନ ହୋଇ ସ୍ୱଧର୍ମ ଓ ଯୁଗରୁଚି ପ୍ରଭାବରେ ନବ କଳେବର ଧାରଣ କରିଛି, ଜାତୀୟ ଜୀବନର ପ୍ରତିବିମ୍ବ ବହନ କରି ଜାତିର ହୃଦୟ କନ୍ଦରରେ ସୁପ୍ରତିଷ୍ଠିତ ହୋଇ ପାରିଛି ।" ଆଲୋଚ୍ୟ କାଳରେ ଜଗନ୍ନାଥ ଦାସ ହେଉଛନ୍ତି ସର୍ବଶ୍ରେଷ୍ଠ ଅନୁବାଦକ । ୧୭ଶ ଓ ୧୮ଶ ଶତାବ୍ଦୀରେ କୃଷ୍ଣସିଂହ (ମହାଭାରତ) ଦୀନବନ୍ଧୁ ଖାଡ଼ଙ୍ଗା (ଭାଗବତ) ହଳଧର ଦାସ (ଅଧ୍ୟାତ୍ମ ରାମାୟଣ) କୃଷ୍ଣ ଚରଣ ପଟ୍ଟନାୟକ (ବାଲ୍ମୀକି ରାମାୟଣ) ପ୍ରସିଦ୍ଧ ଅନୁବାଦକ । ୧୯ଶ ଓ ୨୦ଶ ଶତାବ୍ଦୀରେ ବିହାରୀଲାଲ ପଣ୍ଡିତ (ଭାଗବତ ଗୀତା), ଫକୀରମୋହନ (ରାମାୟଣ, ମହାଭାରତ ଶ୍ରୀମଦ୍ ଭାଗବତ, ଖିଲ ହରିବଂଶ, ଛାନ୍ଦୋଗ୍ୟ ଉପନିଷଦ୍), ବାଳକୃଷ୍ଣ କର (ସାରସ୍ୱତ ରାମାୟଣ), ପଣ୍ଡିତ ଲିଙ୍ଗରାଜ ମିଶ୍ର (ରାମାୟଣ) ଆଚାର୍ଯ୍ୟ ହରିହର (ଭାଗବତ ଗୀତା), ଚିନ୍ତାମଣି ଆଚାର୍ଯ୍ୟ (ଶ୍ରୀମଦ୍ ଭାଗବତ) ମହେଶ୍ୱର ଦାସ କବିଭୂଷଣ, ଆନନ୍ଦ ଚରଣ ପଟ୍ଟନାୟକ ଓ ଜଗତବନ୍ଧୁ ମହାପାତ୍ର (ତୁଳସୀ ରାମାୟଣ ହିନ୍ଦି) ପ୍ରଭୃତି ଅନୁବାଦ କରିଛନ୍ତି । ଓଡ଼ିଆ ସାହିତ୍ୟରେ ଭଗବତ ଗୀତାର ବହୁସଂଖ୍ୟକ ଅନୁବାଦ, ଅନୁଶୀଳନ ଓ ଟୀକାର ପ୍ରସାର ଆଜି ପର୍ଯ୍ୟନ୍ତ ଦେଖିଲେ ଚମତ୍କୃତ ହେବାକୁ ହୁଏ ।

ଭାବାନୁବାଦ ଦୃଷ୍ଟିରୁ ବିଚାର କଲେ ୧୬ଶ ଠାରୁ ଅଷ୍ଟାଦଶ ଶତାବ୍ଦୀ ଭିତରେ କବି ଧରଣୀଧର (ଗୀତଗୋବିନ୍ଦ), ... ଭଞ୍ଜ (ଜନାବଳି), ଗୋପାଳକୃଷ୍ଣ (ବିଦଗ୍ଧ ମାଧବ, ଗୁଣ୍ଡ ସ୍ତୁତାଞ୍ଜଳି, କୃଷ୍ଣ ... ଓ ବିଲ୍ୱମଙ୍ଗଳଙ୍କ ଶ୍ରୀକୃଷ୍ଣ-କର୍ଣ୍ଣାମୃତ) ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ବଙ୍ଗଳା ଭାଷାରୁ କୃଷ୍ଣଦାସ କବିରାଜଙ୍କ କୃତ ଚୈତନ ଚରିତାମୃତକୁ 'ଶ୍ରୀକୃଷ୍ଣ ଚୈତନ୍ୟ-ଚରିତାମୃତସାର' ଓ ରୂପଗୋସ୍ୱାମୀଙ୍କ ବିଦଗ୍ଧ ମାଧବର ବଙ୍ଗାନୁବାଦ ରାଧାକୃଷ୍ଣ-ଲୀଳା-କଦମ୍ବକୁ 'ବ୍ରଜ ଲୀଳାମୃତ ସମୁଦ୍ର' ନାମରେ ଅନୁବାଦ କରି ଥାଇଲେ । ୧୯ଶ ଓ ବିଂଶ ଶତାବ୍ଦୀରେ ବ୍ରଜବିହାରୀ ... ବିଜୟବିଷ୍ଣୁ କୃଷ୍ଣଚନ୍ଦ୍ରଙ୍କର (ରଘୁ ସଂହାର), ଗୋବିନ୍ଦ ଚନ୍ଦ୍ର ଶର୍ମା ଓ ... ଭୁନେଶ୍ୱର ମହାପାତ୍ର (ରଘୁବଂଶ), ଜଗନ୍ନାଥ, ଗୋପୀନାଥ ନ... ଗୋପାଳ ଜାନୁନ୍ଦଗୋ, ଲକ୍ଷ୍ମୀ ଦେବୀ, ରାଧାମୋହନ ଗଡ଼ନାୟକ (ମେଘଦୂତ), ଗୋପୀନାଥ ନନ୍ଦ, (ବିଦ୍ଧଶାଳୀୟ କାବ୍ୟ, ଚୌର ପଞ୍ଚାଶିକା) ମିତ୍ରୋଦୟ ସିଂହଦେଓ, (ନୈଷଧ), ରାମଶଙ୍କର ରାୟ, (ବେଦ, ଉପନିଷଦ), ରାଧାମୋହନ ରାଜେନ୍ଦ୍ର ଦେବ, ଜାନକୀବଲ୍ଲଭ ପଟ୍ଟନାୟକ, ମଦନମୋହନ ତ୍ରିପାଠୀ (ଭର୍ତ୍ତୃହରିଙ୍କ ଶତକତ୍ରୟ) ମିତ୍ରଭାନୁ ତ୍ରିପାଠୀ (ମୁକ୍ତକାବ୍ୟ ସାହିତ୍ୟ ସଂଗ୍ରହ), ଓ ବଙ୍ଗଭାଷାରୁ ନବୀନ ସେନଙ୍କ ... ନନ୍ଦକୁଳ ସମ୍ପୂର୍ଣ୍ଣ ... ଅନୁବାଦ କରିଛନ୍ତି । କାବ୍ୟ କବିତାର ଅନୁବାଦ ସମୟରେ କାଳିଦାସଙ୍କ କାବ୍ୟକୃତି ବିଶେଷଭାବେ ଅନୂଦିତ ଓ ପ୍ରଶଂସିତ ହୋଇ ଆସିଛି । ଫକୀରମୋହନଙ୍କ ବୌଦ୍ଧାବତାର କାବ୍ୟ (ଅମିତାଭ ଓ ଲଳିତ ବିସ୍ତାର) ଗଙ୍ଗାଧର ମେହେରଙ୍କ ପ୍ରଣୟ ବଲ୍ଲରୀ (ଶକୁନ୍ତଳା) ପ୍ରଭୃତିର ଭାବାନୁବାଦ । ବହୁ ସଂସ୍କୃତ ଗ୍ରନ୍ଥର ଅନୁବାଦକ ଗୋପୀନାଥ ନନ୍ଦ ଓ ମୃତ୍ୟୁଞ୍ଜୟ ରଥଙ୍କ ଅବଦାନ (କୁମାର ସମ୍ଭବ) ସ୍ମରଣୀୟ ।

**ନାଟକ ଓ ଅନାନ୍ୟ :—**

ସଂସ୍କୃତ ନାଟକରୁ ପ୍ରଥମେ ମଧୁସୂଦନ ରାଓ (ଉତ୍ତରରାମ ଚରିତ— ଭବଭୂତି) ଅନୁବାଦ କରି ଅଗ୍ରଣୀ ହୋଇଛନ୍ତି । ଆଧୁନିକ ଯୁଗରେ ଅନ୍ୟମାନଙ୍କ ମଧ୍ୟରେ ମୃତ୍ୟୁଞ୍ଜୟ ରଥ (ମୁଦ୍ରାରାକ୍ଷସ, ବନଗୋପାଳୀ) ଅଜୟ

ଘୋଷ (ନାଟକ) ଧନେଶ୍ୱର ମହାପାତ୍ର (ଅଭିଜ୍ଞାନ ଶାକୁନ୍ତଳମ୍) ପ୍ରଭୃତି ଅନୁବାଦ କରିଛନ୍ତି ।

ଅନ୍ୟାନ୍ୟ ସଂସ୍କୃତ ଅନୁବାଦ ମଧ୍ୟରେ ସୁଦର୍ଶନ ନନ୍ଦ (ଶତକ-ଶ୍ଲୋକ), ଗୋକର୍ଣ୍ଣର ରାଜା (ଶଙ୍କରାଚାର୍ଯ୍ୟଙ୍କ ଆତ୍ମବୋଧ), ଓଡ଼ିଶା ସାହିତ୍ୟ ଏକାଡେମୀଙ୍କ ଆନୁକୂଲ୍ୟରେ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ (ନାଟ୍ୟଶାସ୍ତ୍ର) ପଣ୍ଡିତ ନାରାୟଣ (କାବ୍ୟ ପ୍ରକାଶ), କୁଳମଣି ମିଶ୍ର (ଧ୍ୱନ୍ୟାଲୋକ), ସୁଦର୍ଶନ ଆଚାର୍ଯ୍ୟ (କଥା ସରିତ ସାଗର) ବାଲୁଙ୍କେଶ୍ୱର (ଶିଶୁପାଳ ବଧ), ଚନ୍ଦ୍ରଶେଖର ଶର୍ମା (ଅର୍ଥଶାସ୍ତ୍ରମ୍)ର ଅନୁବାଦ କରିଛନ୍ତି ।

ଗତ ୩୦ ବର୍ଷ ମଧ୍ୟରେ ଅନୁବାଦକଗଣ ବିଦେଶୀ-ସାହିତ୍ୟ ସଙ୍ଗେ ସଙ୍ଗେ ଭାରତର ବିଶିଷ୍ଟ ସାଧକମାନଙ୍କର ଗ୍ରନ୍ଥାନୁବାଦରେ ଧ୍ୟାନ ଦେଇଛନ୍ତି । ଏଥିରୁ ହିନ୍ଦୀ, ବଙ୍ଗଳା, ଇଂରାଜୀରୁ ଅନୁବାଦ ବିଶେଷ ଭାବରେ ପରିଲକ୍ଷିତ ହୁଏ । ଉତ୍ତର ଭାରତୀୟ ସାହିତ୍ୟ ଅପେକ୍ଷା ଦକ୍ଷିଣ ଭାରତୀୟ ସାହିତ୍ୟରୁ ଅନୁବାଦ ପ୍ରାୟ ନାହିଁ କହିଲେ ଚଳେ ।

## ଗଳ୍ପ ଓ ଉପନ୍ୟାସ :—

ବିଂଶ ଶତକରେ ବଙ୍ଗ ସାହିତ୍ୟର ପ୍ରସିଦ୍ଧ ଔପନ୍ୟାସିକ ଶରତ ଚନ୍ଦ୍ରଙ୍କ 'ଶ୍ରୀକାନ୍ତ' ସେକ୍ କରିମଙ୍କ ଦ୍ୱାରା ଅନୂଦିତ ହୋଇଛି । ତାଙ୍କର 'ଶେଷପ୍ରଶ୍ନ' ଓ ଅନ୍ୟାନ୍ୟ ଉପନ୍ୟାସ ମଧ୍ୟ ଅନୁବାଦିତ ହେଲଣି । ବଙ୍କିମ ଚନ୍ଦ୍ରଙ୍କ (ଆନନ୍ଦ ମଠ, କପାଳ କୁଣ୍ଡଳା) ଓ ଅନ୍ୟାନ୍ୟ, ବିଭୂତି ଭୂଷଣଙ୍କ (ଅପରାଜିତ) ପ୍ରଭୃତି ଓ ପ୍ରଖ୍ୟାତ ହିନ୍ଦୀ ଔପନ୍ୟାସିକ ପ୍ରେମଚନ୍ଦ୍‌ଙ୍କ (ଗୋଦାନ, ଗବନ) ଅନୁବାଦ କରି ଗୋଲକ ବିହାରୀ ଧଳ ପ୍ରସିଦ୍ଧି ଲାଭ କରିଛନ୍ତି । ଭଗବତୀ ଚରଣ ବର୍ମା (ଚିତ୍ରଲେଖା,) ଧର୍ମବୀର ଭାରତୀ (ସୂର୍ଯ୍ୟଙ୍କ ସପ୍ତମ ଅଶ୍ୱ), ହଜାରୀ ପ୍ରସାଦ ଦ୍ୱିବେଦୀ (ବାଣଭଟ୍ଟଙ୍କ ଆତ୍ମକଥା) ଲୌହକପାଟ, ସାହେବ ବିବି ଗୋଲାମ ପ୍ରଭୃତି ବହୁ ଉପନ୍ୟାସ ଅନୂଦିତ ହେଲଣି । ଅନ୍ୟାନ୍ୟ ଅନୁବାଦରେ ଗୋବିନ୍ଦ ମିଶ୍ର, ଉପେନ୍ଦ୍ର କୁମାର ଦାସ, ନାରାୟଣ

ଗିରବର ସାମନ୍ତ, ଶ୍ରୀନିବାସ ବିଦ୍ୟାନାଥ, ରବୀନ୍ଦ୍ରନାଥ ସିଂହ ପ୍ରଭୃତି ମନୋନିବେଶ କରିଛନ୍ତି ।

ଚନ୍ଦ୍ର ଶେଖରଙ୍କ ହିତୋପଦେଶ ଓ ଜାତକ—କାହାଣୀକୁ ଅଧ୍ୟାପକ ଶ୍ରୀଧର ଦାସ, ଦଶକୁମାର ଚରିତକୁ ଶ୍ରୀଧର ମହାପାତ୍ର, ହିନ୍ଦୀରୁ ଅନେକ ମୁରାରି ପାଠକ ଓ ଅନ୍ୟମାନେ ବଙ୍ଗଳା ଓ ହିନ୍ଦୀ ସାହିତ୍ୟରୁ ବହୁ ଗ୍ରନ୍ଥ ଅନୁବାଦ କରିଛନ୍ତି ।

## ପ୍ରବନ୍ଧ ଓ ଅନ୍ୟାନ୍ୟ :—

ଆଧୁନିକ ଯୁଗରେ ଭାରତର ବରପୁତ୍ର ଗାନ୍ଧିଜୀ, ନେହେରୁ, ରାଜଗୋପାଳାଚାରୀ; ରାଧାକୃଷ୍ଣନ, ଶିବରମଣ, ରବୀନ୍ଦ୍ରନାଥ ଠାକୁର, ଅରବିନ୍ଦ, ବିବେକାନନ୍ଦ ପ୍ରଭୃତିଙ୍କ ଜୀବନୀ, ଇଂରାଜୀ ପ୍ରବନ୍ଧ ଓ ଗ୍ରନ୍ଥର ଅନୁବାଦ ମଧ୍ୟ ପାଠକଙ୍କ ଦୃଷ୍ଟି ଆକର୍ଷଣ କରିଛି । ଗୋପବନ୍ଧୁ ଚୌଧୁରୀ (ମହାତ୍ମା ଗାନ୍ଧୀଙ୍କ ଆତ୍ମଜୀବନ ଚରିତ), ସୁରେନ୍ଦ୍ର ଦ୍ୱିବେଦୀ (ଜବାହାର ନେହେରୁଙ୍କ ବିଶ୍ୱ ଇତିହାସ ଓ ମୋ ନିଜ କାହାଣୀ ) ବ୍ରହ୍ମାନନ୍ଦ ( ଡିସକଭରି-ଅଫ୍ ଇଣ୍ଡିଆ ) ଗୋଲକବିହାରୀ ଧଳ ( ରାଜଗୋପାଳ ଚାରୀଙ୍କ···ଆମ ସଂସ୍କୃତି ) ଗୋକୁଳାନନ୍ଦ ମହାପାତ୍ର ( ସି· ଭି. ରମଣଙ୍କ ବିଜ୍ଞାନର ଦୃଷ୍ଟି), ଶାନ୍ତିଲତା ତ୍ରିପାଠୀ (ରାଧାକୃଷ୍ଣନଙ୍କ The Recovey of faith) ପ୍ରଭୃତି ଅନୁବାଦରେ ମନୋନିବେଶ କରିଛନ୍ତି ।

## ବିଦେଶୀ ସାହିତ୍ୟ :—

ଊନବିଂଶ ଶତାବ୍ଦୀର ପ୍ରାକ୍‌କାଳରେ ଇଂରେଜ ଭାଷା ଆମସ୍ ସଟନ, ଉଇଲିୟମ ସି. ଲେସି, ଜେ· ଏର୍, ଫିଲିପ୍‌ସଙ୍କ ନାମ ଅନୁବାଦକ ଭାବେ ଉଲ୍ଲେଖ ଯୋଗ୍ୟ । ସେମ ସନ୍ଧ୍ୟ ଜନ୍ ବନୟାନଙ୍କ—(Piligrims Progress—ସ୍ୱର୍ଗ ଯାତ୍ରୀର ବୃତ୍ତାନ୍ତ ଓ New testament (ଖ୍ରୀଷ୍ଟ-ପୁରବୃତ୍ତ ନାମରେ ) ଅନୁବାଦ କରିଥିଲେ । ପାଠ୍ୟପୁସ୍ତକ ଅନୁବାଦକ ଭାବରେ ବିଚ୍ଛନ୍ଦଚରଣ ପଟ୍ଟନାୟକ (ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ସୀତା-ବନବାସ), ଜଗମୋହନ ଲାଲ (ଷ୍ଟର୍ଲିନ୍‌ଙ୍କ ଓଡ଼ିଶାର ଇତିହାସ-୧୮୦୩ରୁ

୧୮୮୪ ଓଡ଼ିଆ ଭାଷାରେ, ଷୀରୋଦଚନ୍ଦ୍ର ରାୟ ଚୌଧୁରୀ (ପେରେଡାଇଜର ସଂକ୍ଷିପ୍ତ ଗଡ଼ବୋଧ), ସୀତାନାଥ ରାୟ (ବୋଧଦାୟୀ) ପ୍ରଭୃତି ଅନୁବାଦ କରିଥିଲେ। ଏହି ସ୍ତରରେ ଅନ୍ୟ ଅନୁବାଦକମାନେ ହେଲେ ଫକୀର ମୋହନ, ଗୋବିନ୍ଦ ରଞ୍ଜନାୟକ, ବନମାଳି ସିଂହ, ଚନ୍ଦ୍ରନାଥ ରାୟ, ଡ଼: ଟେଲର୍ ପ୍ରଭୃତି। ଗୁରୁପାଠ ଏହି ସମୟରେ—ଶକୁନ୍ତଳା ଉପାଖ୍ୟାନ, ଆଖ୍ୟାନ ମଞ୍ଜରୀ, ମତିବୋଧ, ସ୍ପାନୀଆଡ୍, ବଜାଜ ମଦନମୋହନ, ମୃତ୍ୟୁକାଳୀନ ବଚନ (Dying saying of Bunian) ପ୍ରଭୃତି ଅନୁବାଦିତ ହୋଇଥିଲା।

**କାବ୍ୟକବିତା ଓ ନାଟକ :—**

ଆଧୁନିକ ଯୁଗରେ ରାଧାନାଥ ଓ ମଧୁସୂଦନ କାବ୍ୟ ସାହିତ୍ୟର ପ୍ରଥମ ଅନୁବାଦକ। ରାଧାନାଥଙ୍କ କେଦାର ଗୌରୀ, ଚନ୍ଦ୍ରଭାଗା ଓ ଉଷା ପ୍ରଭୃତି ଓଭିଡ଼ଙ୍କ ମେଟାମୋରଫିସିସ୍ ଓ ଆଟଲାଣ୍ଟାରେସ୍‌ର ଅବଲମ୍ବନ ଓ ଅନୁବାଦରେ ସମୃଦ୍ଧ। ପଣ୍ଡିତ ନୀଳକଣ୍ଠ ଦାସ (Tennysonଙ୍କ The Princessକୁ 'ପ୍ରଣୟିନୀ' ଓ Enoch Ardenକୁ 'ଦାସ ନାଏକ', ଚନ୍ଦ୍ରମଣି ଦାସ (Goldsmith ଙ୍କ Deserted Village କୁ 'ଜନନ ପଲ୍ଲୀ', ଅଜୟଚନ୍ଦ୍ର 'ଷୋଡ଼ଶ ଝଣା' ଜ୍ଞାନୀନ୍ଦ୍ର ବର୍ମା ପୋଡ଼ା ଭୂଇଁ ଓ ଅନ୍ୟାନ୍ୟ କବିତା, ଏଜ୍‌ରା ପାଉଣ୍ଡଙ୍କ କବିତା ଅନୁବାଦକ, ରବି ମହାପାତ୍ର (ସବୁଜବନାମୀ), ମୋପାଲକାନ୍ନୁନ୍‌ଗୋ, ଗୋପାଳ ଚନ୍ଦ୍ର ମିଶ୍ର ପ୍ରମୁଖ ଅନେକ ଇଂରେଜୀ କବିତାର ଅନୁବାଦ କରିଛନ୍ତି।

ଇଂରେଜୀ ଭାଷାରୁ ନାଟକ ଖୁବ୍ କମ ସଂଖ୍ୟକ ଓଡ଼ିଆରେ ଅନୂଦିତ ହୋଇଛି। ଏ କ୍ଷେତ୍ରରେ ଅକ୍ଷୟକୁମାର ବନ୍ଦୋପାଧ୍ୟାୟ (ସେକସ୍‌ପିଅରଙ୍କ ହାମଲେଟ) ମାୟାଧର ମାନସିଂହ (ଅଥେଲୋ) ଜ୍ଞାନୀନ୍ଦ୍ର ବର୍ମା (ମେଟାଲିଙ୍କଙ୍କ Blue Bird—ନୀଳବିହଙ୍ଗ), ମନୋରଞ୍ଜନ ଦାସ (ଭଦ୍ରଲୋକ—ଜାପାନୀ ନାଟକ, ନାସ୍ତି—ଇଂରାଜୀରୁ) ଓ ଅନ୍ୟ ଅନେକ ନାଟକ ଅନୁବାଦ କରିଲେଣି।

ଗଳ୍ପ ଓ ଉପନ୍ୟାସ :—

ଉପନ୍ୟାସ କ୍ଷେତ୍ରରେ ଗୋଦାବରୀଶ ମିଶ୍ର ଜଣେ ସଫଳ ଅନୁବାଦକ । ସେ ଭିକ୍ଟର ହ୍ୟୁଗୋଙ୍କର (ଲ'ମିଜରେବଲ—'ଅଭାଗିନୀ', ରବର୍ଟ ଲୁଇସ୍ ଷ୍ଟିଭେନସନ୍ଙ୍କର Strange case of Dr. Jekyll and Mr. Hyde—'ଘଟାନ୍ତର') ଓ ପୋ ବ୍ୟକ୍ତ ହବାସିତ, ୧୮୧୭ ବଙ୍ଗଦର୍ଶୀ ସାହିତ୍ୟର ଆଦ୍ଧ୍ୟ । ସ୍ୱାମଚନ୍ଦ୍ର ଆଚାର୍ଯ୍ୟଙ୍କ (ଲ'ମିଜର ବେଲ୍- ''ପୀୟୂଷ ପ୍ରବାହ) ଏକ ସୁନ୍ଦର ଅନୁବାଦ ଗ୍ରନ୍ଥ । ଉଦୟନାଥ ଷଡ଼ଙ୍ଗୀ (ମିସେସ୍ ଷ୍ଟୋଭାରସେଟ୍ ଏଲିଜାବେଥଙ୍କ Uncle Toms cabin— 'ଟମକକାଙ୍କ କୁଟୀର'), ଗୋଦାବରୀଶ ମହାପାତ୍ର ମେରୀ କରଲ୍ଲିଙ୍କ ଭେଣ୍ଡେଟ୍ଟା-'ରକ୍ତପାତ', ଚନ୍ଦ୍ରଧର ଶତପଥୀ ଡଷ୍ଟୋଭେସ୍କିଙ୍କ Crime & Punishment କୁ ପାପ ଓ ପ୍ରାୟଶ୍ଚିତ୍ତ, ଜ୍ଞାନେନ୍ଦ୍ର ବର୍ମା (ନାନା), ଧନେଶ୍ୱର ମହାପାତ୍ର (The Resurretion ପୁନର୍ଜୀବନ) ଲକ୍ଷ୍ମୀଧର ମହାନ୍ତି (ଆନା କାରେନିନା) ମନମୋହନ ମିଶ୍ର ଉଦ୍‌ଭ୍ରାନ୍ତ, ମାଲଞ୍ଚମଣିଷ), ଚିତ୍ତରଞ୍ଜନ ଦାସ (ସମ୍ମୋହିନୀ), ରବୀନ୍ଦ୍ରନାଥ ସିଂହ (ମିଖାଇଲ ଲେରମେଣ୍ଟଭଙ୍କ—'ନାୟକ ଆମ ସମୟର') ଶ୍ରୀଧର ଦାସ (ଆଇଭାନ୍ହୋ, ଚନ୍ଦ୍ରକାନ୍ତ ମଣିଷ, ରତ୍ନଦ୍ୱୀପ) କାଳି ନଗେନ୍ଦ୍ରକୁମାର ରାୟ ('ଜାଁକ୍ରିସ୍ତଫ'—ରୋମାଁରୋଲାଁଙ୍କର, ପାଲଲାଗର୍କଭିଷ୍ଟଙ୍କ 'କାରବାସ' ହାବେଲ୍ଡ ଲକ୍ସନେସଙ୍କ 'ସ୍ୱାଧୀନତା ମାନବ') ପ୍ରଭୃତି ଉପନ୍ୟାସ ସମୂହ ଅନୁବାଦ କରିଛନ୍ତି । ଏହା ବ୍ୟତୀତ ଆଚ୍ଛୋମାଟହୋପ (ଦ ପ୍ରିଜନ୍ ଅଫ୍ ଜେଣ୍ଡା), ଉଇଲିୟମ ସମ୍ବେସ୍ଥାନ (ମାନବୀୟ ବନ୍ଧନ), ପାଲବର୍କ (ଗୁଡ଼ଆର୍ଥ), (ଡକ୍ଟର ଜିଭାଗୋ) ମିଖାଇଲ ଏନ୍‌କା (ମଣିଷ ଦୈତ୍ୟ) ସୁବୋଧ କୁମାର ଗୁର୍ଟଜା (ପାପମଳ ଓ ଅନ୍ୟାନ୍ୟ) ଗର୍କୀ, ଟଲଷ୍ଟୟ ପ୍ରଭୃତି ପୃଥିବୀର ବଶିଷ୍ଟ ଔପନ୍ୟାସିକଙ୍କର ଉପନ୍ୟାସ ଅନୂଦିତ ହୋଇ ଓଡ଼ିଆ ସାହିତ୍ୟର କଳେବର ବୃଦ୍ଧିରେ ସାହାଯ୍ୟ କରିଛି ।

ଗଳ୍ପ କ୍ଷେତ୍ରରେ ଗୋଦାବରୀଶ ମହାପାତ୍ର (ଟଲଷ୍ଟୟ ଗଳ୍ପ) ଦୁଃପ୍ରଭା କର; ଗୋଦାବରୀଶ ମିଶ୍ର; ଲିଙ୍ଗରାଜ ମିଶ୍ର, ଶ୍ରୀଧର ମହାପାତ୍ର; ପ୍ରଭାସ

ଶତପଥୀ (ମୋପାସାଁ ଓ ଚେକଫଙ୍କ ଗଳ୍ପମାଳା) ଲକ୍ଷ୍ମୀନାରାୟଣ ମହାନ୍ତି (ଦେଶର ନାମାନୁସାରେ ପୃଥିବୀର ବିଭିନ୍ନ ଦେଶର ଗଳ୍ପ), ଜାନକୀବଲ୍ଲଭ ମହାନ୍ତି (ଦେଶ ବିଦେଶର କାହାଣୀ), ଶ୍ରୀଧର ଦାସ (ସେକ୍ସପିଅର, ଟଲଷ୍ଟୟ, ହୋମର ଓ ଟର୍ଗେଙ୍କ କାହାଣୀ ସମୂହ) ଗୋପାଳ ମିଶ୍ର (କପୋତ ଚେଜଣୋର ଗ୍ରୀବ); ଗୋବିନ୍ଦ ମିଶ୍ର ରମେଶ ଚନ୍ଦ୍ର ଧଳ; ରମେଶ ଚନ୍ଦ୍ର ମହାନ୍ତି ପ୍ରଭୃତି ଆହୁରି ଅନେକ ବ୍ୟକ୍ତି ଗଳ୍ପ ଅନୁବାଦରେ ସାହିତ୍ୟକୁ ସମୃଦ୍ଧ କରି ଚାଲିଛନ୍ତି ।

## ପ୍ରବନ୍ଧ ଓ ଅନ୍ୟାନ୍ୟ—

ପ୍ରବନ୍ଧ ସାହିତ୍ୟରେ ପାଦ୍ରୀମାନଙ୍କ ବିଭିନ୍ନ ଅନୁବାଦ ପରେ ରାଧାନାଥ (ଇଟାଲୀୟ ଯୁବା), ମଧୁସୂଦନ (ଲିସବନ ଭୂମିକମ୍ପ, ପ୍ରଣୟର ଅଦ୍ଭୁତ ପରିଣାମ), ଅମର ବଲ୍ଲଭ ଦେ (କାରଲାଇଲଙ୍କ The Hero & Hero worship—‘ବୀରପୂଜା’) ରାଧାନାଥ ରଥ (ଆର୍ନୋଲଡ଼ ଟୟନବିଙ୍କ ‘ଏକ ବିଶ୍ୱ ଓ ଭାରତ’), ରବୀନ୍ଦ୍ରନାଥ ସିଂହ (ଟର୍କଙ୍କର ‘ଆଲେଖ୍ୟ’) ପ୍ରଭୃତି ଅନେକ ପ୍ରବନ୍ଧ, ଇତିହାସ ରାଜନୀତି ପ୍ରଭୃତି ବିଶିଷ୍ଟ ଗ୍ରନ୍ଥକୁ ଅନୁବାଦ କରିବାରେ ଅଗ୍ରଣୀ ଅଛନ୍ତି ।

ଆଜି ପୃଥିବୀର ଏପରି କୌଣସି ସଭ୍ୟ ସମୃଦ୍ଧ ସମ୍ମାନ୍ୟ ଦେଶ ନାହିଁ ଯାହାର ଗଳ୍ପସାହିତ୍ୟ ସଙ୍ଗେ ଓଡ଼ିଆ ପାଠକେ ସୁପରିଚିତ ନୁହନ୍ତି । ଅର୍ଥାତ୍ ପ୍ରତ୍ୟେକ ଦେଶର ପ୍ରଭୂତ ଗଳ୍ପ ସମ୍ଭାର ପ୍ରତିବର୍ଷ ଆନୂଦିତ ହେବାର ଦେଖାଯାଉଛି । ବହୁଦେଶର ଉପନ୍ୟାସ ଓ ବିଶ୍ୱବିଖ୍ୟାତ ଉପନ୍ୟାସ ସଙ୍ଗେ ପାଠକର ପରିଚୟ ଘଟିଛି । ଆଜି ଆମେରିକା ଓ ରୁଷିଆର ଭାରତସ୍ଥ ଦୂତାବାସ ଜରିଆରେ ସେ ଦେଶର ସାହିତ୍ୟର ପ୍ରଚାର ଓ ପ୍ରସାର ପାଇଁ ନୂତନ ଯୋଜନା ପରିକଳ୍ପିତ ହୋଇଛି । ଅଧ୍ୟାପକ ଗୋପାଳ ଚନ୍ଦ୍ର ମିଶ୍ର ତାଙ୍କ ଅନୁବାଦିତ ‘କପୋତ ଜେଣୋର ଗ୍ରୀବ’ ଗ୍ରନ୍ଥ ଅନୁବାଦ କରି ସୋଭିଏଟ୍ ଦେଶ ନେହୃରୁ ପୁରସ୍କାର ଲାଭ କରିବାର ଗୌରବ ଅର୍ଜନ କରିଛନ୍ତି । ଅତୀତରେ ଅଧ୍ୟାପକ ଗୋଲୋକ ବିହାରୀ ଧଳ

(ଯୋଗଦାନ) । ଅଧ୍ୟାପକ ଧନେଶ୍ୱର ମହାପାତ୍ର (ପୁନର୍ଜୀବନ) ଓ ତରୁଣ କବି ଲକ୍ଷ୍ମୀନାରାୟଣ ମହାପାତ୍ର 'ସୋଭିଏତ୍ କବିତାବଳୀ' ଅନୁବାଦ ଲାଗି ପୁରସ୍କୃତ ହୋଇଛନ୍ତି ।

ଓଡ଼ିଆ ଅନୁବାଦ-ସାହିତ୍ୟର ଗୁଣାତ୍ମକ ଓ ପରିମାଣାତ୍ମକ ଉଭୟ ଦୃଷ୍ଟିରୁ ଲକ୍ଷ୍ମୀନାରାୟଣ ମହାନ୍ତି, ଶ୍ରୀଧର ଦାସ ଓ ଲାଲନଗେନ୍ଦ୍ର କୁମାର ରାୟ ଅଗ୍ରଗଣ୍ୟ । ଏଣୁ ସାହିତ୍ୟର ବିକାଶରେ ପ୍ରଥମ ଦୁଇଜଣ ଓ ଶେଷୋକ୍ତ ବ୍ୟକ୍ତି ପୃଥିବୀର ପ୍ରାୟ ସମସ୍ତ ନୋବେଲ ପୁରସ୍କାର ପ୍ରାପ୍ତ ଉପନ୍ୟାସକୁ ଅନୁବାଦ କରି ଓଡ଼ିଆ ସାହିତ୍ୟର ଉନ୍ନତି ପଥରେ ଅଂଶୀଦାର ହୋଇଛନ୍ତି ।

## ଅନୁବାଦକ ଲାଲ ନଗେନ୍ଦ୍ରକୁମାର ରାୟ :—

ଓଡ଼ିଆ ଅନୁବାଦ ସାହିତ୍ୟର ଦୀର୍ଘ ପରମ୍ପରାରେ ବହୁ ଉପନ୍ୟାସ ଅନୁବାଦର ଗୌରବ ଅର୍ଜନ କରିଛନ୍ତି ଲାଲ ନଗେନ୍ଦ୍ର କୁମାର ରାୟ । ତାଙ୍କର ଅନୁବାଦ ନିଚ୍ଛକ, ନିର୍ଭୁଲ ଓ ମୌଳିକ । ଦୀର୍ଘ ଜୀବନର ସାଧନାମୟ ପଥରେ ସେ ଏକାଧାରରେ ସାମ୍ବାଦିକ, ନାଟ୍ୟକାର, ସଫଳକାମ ସମାଜସେବୀ, ନେତା, ସଂଗ୍ରାମୀ ଓ ଜଣେ ବିଶିଷ୍ଟ ଅନୁବାଦକର ଗୌରବ ଅର୍ଜନ କରିଛନ୍ତି । ମାତ୍ର ପ୍ରତିଭାର ଅଭିନବ ଭୂମି ଓଡ଼ିଶାରେ ଜନ୍ମଲାଭ କରି ବର୍ତ୍ତମାନ ବାର୍ଦ୍ଧକ୍ୟରେ ସାହିତ୍ୟିକ ଋଣ, ଅର୍ଥାଭାବ ଓ ମାନସିକ ଦୁଶ୍ଚିନ୍ତାରେ ସଢ଼ୁଛନ୍ତି । ଜନସାଧାରଣ କିମ୍ବା ସରକାରଙ୍କର ସେଥିପ୍ରତି ଦୃଷ୍ଟି ପଡ଼ୁନାହିଁ ।

ସାହିତ୍ୟିକ ରାୟଙ୍କ ସହ କିଛି ସମୟ ପ୍ରତ୍ୟକ୍ଷ ସମ୍ପର୍କରେ ଆସି, ତାଙ୍କ ସଂଗ୍ରାମମୟ ଜୀବନ ସମ୍ବନ୍ଧରେ କିଛିଟା ଅନୁଭୂତ ଲେଖକର ଆସି ଅଛି । ତାଙ୍କୁ ଦେଖିଲେ ଓ ଶୁଣିଲେ ମନେହୁଏ ସତେ ଯେପରିକି ଶତଗୁଣ ସତ୍ତ୍ୱେ ବାର୍ଦ୍ଧକ୍ୟ ପାରିବାରିକ ତଥା ସାମାଜିକ ଜୀବନରେ ମଣିଷକୁ ଅପାଂକ୍ତେୟ କରି ଫୋପାଡ଼ି ଦେବାର ସାଧାରଣ ଦର୍ଶନ ଆଖି ଆଗରେ ଭାସିବୁଲେ । ଏହିପରି ଜରାଶାପୀଡ଼ିତ ଜୀବନରେ ସାହିତ୍ୟିକ ତାଙ୍କ

ଆତ୍ମକାହାଣୀ "ମୋ ଦେଖା ଓଡ଼ିଶା", ୧୯୦୭—୧୯୭୫ ଧାରାବାହିକ ଭାବେ ଡଗରେ ପତ୍ରିକାରେ ପ୍ରକାଶ କରି ଚାଲନ୍ତି । ଦୁଃସ୍ଥ ରାଜନୈତିକ କର୍ମୀ ଭାବେ ପେନସନ୍ ଓ ଜେଷ୍ୟାତିତ ବନ୍ଦୀ ଦ୍ୱାରା ସ୍ୱଳ୍ପାର୍ଜିତ ଅର୍ଜନରେ ଅତି ଦୁଃଖରେ କାଳାତିପାତ କରୁଛନ୍ତି । ଓଡ଼ିଆ ସାହିତ୍ୟ ଏକାଡେମୀ ତରଫରୁ ପାଉଥିବା 'ଦୁଃସ୍ଥ ସାହିତ୍ୟିକ ଭତ୍ତା' ପାଉଣାଟିକ ମଧ୍ୟ ସୁବିଧାରେ ମିଳୁ ନାହିଁ । ତେଣୁ ଜଣେ ଆଜୀବନ ସଂଗ୍ରାମୀ ସାଧକଙ୍କର ଯଥାର୍ଥ ସ୍ୱୀକୃତି ପୂଜା ଜଣାଇଲେ ଉଚ୍ଚର ଦାୟିକଗଣ କିଛି ପ୍ରେରଣା ଲାଭ କରିବେ ଏହି ଆଶାରେ ତାଙ୍କ କର୍ମ ବହୁଳ ଜୀବନର ବିଷାଦ ବିବରଣୀ ପରିବେଷଣ କରିବା ପାଇଁ ମନେ କରୁଅଛି ।

**ବାଲ୍ୟ ଓ ଛାତ୍ରଜୀବନ :—**

୧୮୦୩ ମସିହାରେ ଓଡ଼ିଶାକୁ ଇଂରେଜମାନେ ଅଧିକାର କରନ୍ତି । ଓଡ଼ିଆ ଭାଷାନଭିଜ୍ଞ ଇଂରେଜ ଶାସକଗଣ ବଙ୍ଗାଳୀମାନଙ୍କୁ ଅଫିସର ଓ କିରାଣି ନିଯୁକ୍ତ କରି ଆଣିଲେ ଓ ସେମାନଙ୍କ ସାହାଯ୍ୟରେ ଓଡ଼ିଶା ଶାସନ କଲେ । ସେହିବର୍ଷ ନଗେନ୍ଦ୍ର ବାବୁଙ୍କ ଅଣଗୋସାଇଁବାପା ବକ୍ସିବଜାର ବଡ଼େଇ ସାହିରେ ଆସି ବସବାସ କଲେ । ବର୍ତ୍ତମାନ ସେହି ପୁରୁଣା କୋଠାଟିରେ ଲେଖକ ରହୁଅଛନ୍ତି । ସେହି ଗୃହରେ ନଗେନ୍ଦ୍ର ବାବୁଙ୍କ ଜନ୍ମ ହୁଏ ୩୧. ୧୦. ୧୮୯୮ ମସିହାରେ । ସେ ବକ୍ସିବଜାର ନିକଟସ୍ଥ ମିସନାରୀ ପରିଚାଳିତ ପାଠଶାଳାରେ ପ୍ରାଥମିକ ଶିକ୍ଷା ଲାଭ କରିଥିଲେ । ତତ୍ପରେ ସେ ପାଦ୍ରୀ ପରିଚାଳିତ ରୋମାନ୍ କାଥଲିକ୍ ମାଇନର୍ ସ୍କୁଲରେ କିଛିକାଳ ଅଧ୍ୟୟନ କରିଥିଲେ । ଏହି ମାଇନର ସ୍କୁଲଟି ଯେଉଁ ଗୀର୍ଜା ଘରେ ବସୁଥିଲା ତାହା ବର୍ତ୍ତମାନ ପୋଲିସ ରିଜର୍ଭ ଲାଇନ୍‌ରେ ଥିବା ପୋଲିସବେତାର କେନ୍ଦ୍ରଗୃହ । ଏହି ସ୍କୁଲରେ ଅଧ୍ୟୟନ କାଳରେ ଇନସ୍‌ପେକ୍ଟର ଭକ୍ତକବି ମଧୁସୂଦନ ରାଓ ଥରେ ସ୍କୁଲ ପରିଦର୍ଶନରେ ଆସିଥିଲେ ।

୧୯୦୯ ମସିହାରେ ନଗେନ୍ଦ୍ର ବାବୁ ମାଇନର ପଢ଼ିବା ଲାଗି ତାଳଚେର ଯାଇଥିଲେ । ସେଠାରେ ତାଙ୍କ କାକା ଲାଲ ରାମନାରାୟଣ ରାୟ

ତାଳଚେର ରାଜାଙ୍କ କର୍ମୀ ଥିଲେ । ତାଳଚେରର ରାଜପୁତ୍ର ଦ୍ୱୟ ଓ କନ୍ୟା ସୁକୁମାରୀ ତାହାଙ୍କର କ୍ରୀଡ଼ାସଙ୍ଗୀ ଥିଲେ । ବାଲ୍ୟଜୀବନର ମଧୁର ସ୍ମୃତିରେ ତାଙ୍କର ମନନ୍ୟ କରିଥିଲା । ସେଠାରେ ଅବସ୍ଥାନ କାଳରେ ସୁଡ଼ଳ ଦେବଙ୍କ କନ୍ୟା ପାଲଲହଡ଼ାର ରାଣୀଙ୍କ ଶବସତ୍କାରରେ ଲେଖକ ଶ୍ମଶାନ ଭୂମିକୁ ଯାଇଥିଲେ । ସାହିତ୍ୟ ଓ ଦେଶସେବା ମନୋଭାବ ତାଙ୍କ ମଧ୍ୟରେ ପିଲାଦିନୁ ଦେଖିବାକୁ ମିଳେ । କାରଣ ତାଳଚେରଠାରେ ଏହି ଶ୍ରେଷ୍ଠ ବୟସରେ ମଧ୍ୟ ସେ ଶଶୀଭୂଷଣ ରାୟଙ୍କ ଠାରୁ ରାଧାନାଥଙ୍କ ବଙ୍ଗଳା 'ଲେଖାବଳୀ' ଓ ମଧୁସ୍ମୃତି ବହି ନେଇ ପଢ଼ିଥିଲେ । ତାଳଚେରରେ ଅନବର୍ତ୍ତ ଛଅମାସ ରହି ନଗେନ୍ଦ୍ର ବାବୁ ୧୯୧୩ ମସିହାରେ କଟକ ଫେରି ଆସିଲେ । ତାଙ୍କ ପିଲାଦିନର ତାଳଚେର ସ୍ମୃତିକୁ ଆତ୍ମଜୀବନୀରେ ସେ ଲେଖିଛନ୍ତି । ତାଳଚେର ଅଧ୍ୟୟନ କାଳରେ ଅନୁରାଗୀର ଡେପୁଟି ସ୍କୁଲ ଇନସ୍‌ପେକ୍ଟର ଶ୍ରୀନିବାସ ସିଂହଙ୍କ ରଚିତ 'ଶିଶୁମେଳା ଗୀତ' ବହିରେ ପ୍ରଦତ୍ତ ବଡ଼ହେଲେ ପିଅନ, କହାଣୀ ହେବାର ନମ୍ରତମ ଆଦର୍ଶ ବିରୁଦ୍ଧରେ ପ୍ରତିବାଦ କରିଥିଲେ । ତାଙ୍କର ନିର୍ଭୀକତା ପ୍ରତି ତାଳଚେର ରାଜାଙ୍କର ମଧ୍ୟ ସମର୍ଥନ ମିଳିଥିଲା । ପରବର୍ତ୍ତୀ କାଳରେ ଏହି ବହି ବିରୁଦ୍ଧରେ ହରେକୃଷ୍ଣ ମହତାବ 'ପ୍ରଜାତନ୍ତ୍ର' ନଗେନ୍ଦ୍ର ବାବୁ ନିଜ 'ନିର୍ଭୀକ' ପତ୍ରିକାରେ ତୀବ୍ର ସମାଲୋଚନା ଲେଖିଥିଲେ । ନାଟକ ପ୍ରତି କିଶୋର ନଗେନ୍ଦ୍ରଙ୍କର ଆଗ୍ରହ ଏଠାରେ ଜନ୍ମିଥିଲା ।

୧୯୧୨ରେ ତାଳଚେରରୁ ମାଇନର ବୃତ୍ତି ଲାଭକରି ନଗେନ୍ଦ୍ର ବାବୁ ରେଭେନ୍‌ସା କଲେଜିଏଟ୍ ହାଇସ୍କୁଲରେ ଅଧ୍ୟୟନ କଲେ । ଏଠାରେ ତାଙ୍କର ସହପାଠୀ ଥିଲେ ବୃତ୍ତିପ୍ରାପ୍ତ ରାଧାନାଥ ରଥ (ବର୍ତ୍ତମାନର ସମାଜ ସମ୍ପାଦକ) ଓ ନୟାଗଡ଼ର ବୈଦ୍ୟନାଥ ରଥ । ତାଙ୍କର ହିତାକାଂକ୍ଷୀ ବନ୍ଧୁ ଥିଲେ ସୁଭାଷଚନ୍ଦ୍ର ବୋଷ, ମହେଶ ଚନ୍ଦ୍ର ପ୍ରଧାନ । ଭବିଷ୍ୟତରେ ସେ ସୁବାସ ଚନ୍ଦ୍ର ବୋଷଙ୍କ ସହ ଦେଶ ସେବା କାର୍ଯ୍ୟରେ କିଛିକାଳ ଅତିବାହିତ କରିଥିଲେ । ହାଇସ୍କୁଲ ଅଧ୍ୟୟନ କାଳରେ ଓଡ଼ିଆ ବିଷୟରେ ସମସ୍ତଙ୍କଠାରୁ ଅଧିକ ନମ୍ବର ରଖୁଥିବାରୁ 'ଶଶୀଭୂଷଣ ରାୟ' ପୁରସ୍କାର ବହୁବାର ଲାଭ କରିଥିଲେ ।

ମାଟ୍ରିକ୍ ଜଳପାନି ବୃତ୍ତି ଲାଭ କରି ରେଭେନ୍ସା କଲେଜରେ ଆଇ. ଏସ୍. ସି. ଅଧ୍ୟୟନ କଲେ । ଆଇ. ଏସ୍. ସି. ପାଶ୍ ପରେ ନରେନ୍ଦ୍ର ବାବୁ ବି. ଏସ୍. ସି. ଅଧ୍ୟୟନ କରିବା ନିମନ୍ତେ କଲିକତାର ସେଣ୍ଟଜେଭିଅର୍ସ କଲେଜରେ ଭର୍ତ୍ତି ହେଲେ । କିନ୍ତୁ ଗ୍ରାଜୁଏଟ୍ ହେବାର ସୌଭାଗ୍ୟ ତାଙ୍କର ଭାଗ୍ୟରେ ଜୁଟିଲା ନାହିଁ । ଠିକ୍ ବାର୍ଷିକ ପରୀକ୍ଷାଦାନ ମହାତ୍ମାଗାନ୍ଧୀଙ୍କ ଅସହଯୋଗ ଆନ୍ଦୋଳନରେ ଝାସ ଦେଇ ସେଥି କଲିକତାରେ ହିଁ କାରାବରଣ କଲେ । ଏହିଠାରେ ହିଁ ତାଙ୍କ ଛାତ୍ର ଜୀବନରେ ଯବନିକା ପାତ ହେଲା । କିନ୍ତୁ କର୍ମମୟ ଜୀବନରେ ୧୯୩୦ ମସିହାରେ ଉତ୍କଳରୁ [ P. L. ] ଡିଗ୍ରୀ ପାଶ୍ କରିଥିଲେ ।

## କର୍ମମୟ ଜୀବନ—

ନରେନ୍ଦ୍ର ବାବୁ କର୍ମମୟ ଜୀବନରେ ଜଣେ ନିର୍ଭୀକ, କର୍ମଠ ଓ ସଂଗ୍ରାମୀ ବ୍ୟକ୍ତି ଥିଲେ । ତାଙ୍କ ବଡ଼ବାପା ବକ୍ସିବଜାର ଅଞ୍ଚଳର ଜଣେ ନାମଜାଦା ବ୍ୟକ୍ତି ଥିଲେ । ୧୯୦୫ରେ ବଙ୍ଗ ଭଙ୍ଗ ଆନ୍ଦୋଳନ ଓ ବନ୍ଦେ ମାତରଂ ବା ସ୍ୱଦେଶୀ ଆନ୍ଦୋଳନରେ ଅଂଶୀଦାର ହୋଇଥିଲେ । ମଧୁବାରିଷ୍ଟର ତାଙ୍କଠାରୁ ନିଜ କୋଠିର ଦକ୍ଷିଣାଂଶ ଜମିଟିକ କିଣି ଘୋଡାଶାଳ ପ୍ରସ୍ତୁତ କରିଥିଲେ । ତେଣୁ ତାଙ୍କ ବଡ଼ ବାପାଙ୍କର ତତ୍କାଳୀନ ବଙ୍ଗାଳୀ, ଓଡ଼ିଆ ଓ ଖ୍ରୀଷ୍ଟିୟାନ ସମ୍ପ୍ରଦାୟର ବିଶିଷ୍ଟ ବ୍ୟକ୍ତିମାନଙ୍କ ସହ ପରିଚୟ ଥିଲା ଓ ସେମାନେ ତାଙ୍କ ଘରକୁ ଯାଉଥିଲେ । ପିଲାଦିନରୁ ନରେନ୍ଦ୍ର ବାବୁଙ୍କର ରାଜନୈତିକ ବାତାବରଣ ସହିତ ପରିଚିତ ଥିଲା । ପୋଲିସର ମିଥ୍ୟା ମାନହାନି ମୋକଦ୍ଦମାରେ ଗୋପବନ୍ଧୁଙ୍କ ସପକ୍ଷରେ ମତଦାନ କରିଥିବା ସାମ୍ବାଦିକ ପ୍ରମଥନାଥବସୁଙ୍କ ସହ ନରେନ୍ଦ୍ର ବାବୁଙ୍କ ଘନିଷ୍ଠତା ଥିଲା ।

ତାଳଚେରରେ ଅଧ୍ୟୟନ କାଳରେ ନିଜ ବଡ଼ଭାଇ ଦିବ୍ୟଙ୍କଠାରୁ କଂଗ୍ରେସ ଅଧିବେଶନ ଓ ସୁରେନ୍ଦ୍ରନାଥ ବାନାର୍ଜୀଙ୍କ ସମ୍ବନ୍ଧରେ ବହୁକଥା ଶୁଣି ଉତ୍ସାହିତ ହେଉଥିଲେ । ତେଣୁ ମାଟ୍ରିକ୍ ପାଶ୍ ପରେ ୧୯୧୭ ମସିହା କଲିକତା କଂଗ୍ରେସ ଅଧିବେଶନରେ ସେ ଯୋଗଦାନ କରିଥିଲେ ।

ବି.ଏସ୍.ସି. ଅଧ୍ୟୟନ କାଳରେ ସେ ଅସହଯୋଗ ଆନ୍ଦୋଳନରେ ଯୋଗଦାନ କରି ଜେଲ୍ ବରଣ କରିଥିଲେ । କଲିକତାରେ ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ ଓ ସୁବାସବୋଷଙ୍କ ସହ ତାଙ୍କର ସମ୍ପର୍କ ଥିଲା । ପି. କେ. ସେନ୍‌ଙ୍କ ସହ କଂଗ୍ରେସ ଆଂଦୋଳନରେ ଯୋଗଦାନ କରିଥିଲେ । କାଜି ନଜରୁଲ ଇସଲାମଂକ ସହ ତାଂକର ବନ୍ଧୁତ୍ୱ ଥିଲା । ସ୍ୱାଧୀନତା ଆଂଦୋଳନକୁ ଆଖି ଆଗରେ ରଖି କାଜି ନଜରୁଲ 'ଧୂମକେତୁ' ପତ୍ରିକା ପ୍ରକାଶ କଲାବେଳେ ନଗେଂଦ୍ରବାବୁ କଲିକତାରୁ 'ନିର୍ଭୀକ' ପତ୍ରିକା ପ୍ରକାଶ କରୁଥିଲେ । କିନ୍ତୁ ଏହା ଇଂରେଜ ସରକାରଙ୍କର କୋପ ଦୃଷ୍ଟିରେ ପଡ଼ି ବାଜ୍ୟାପ୍ତ ହୋଇଗଲା । ୧୯୨୩ ମସିହା ପର୍ଯ୍ୟନ୍ତ ସେ କଲିକତାରେ ରହିଥିଲେ । ତତ୍ପରେ ୧୯୨୪ରେ ମେଞ୍ଚି ବର୍ଷ ସ୍ୱରାଜ ପାର୍ଟି ଗଠିତ ହେଲା ସେହି ସମୟରୁ ୧୯୨୯ ମସିହା ପର୍ଯ୍ୟନ୍ତ କଟକରୁ 'ନିର୍ଭୀକ' ପତ୍ରିକା ପ୍ରକାଶ ପାଇଲା । ୧୯୩୦ ମସିହା ସେ ନିଜେ ଗୋଟିଏ ପ୍ରେସ୍ ବସାଇଲେ । ୧୯୩୧ ମସିହାରେ ନିର୍ଭୀକ ନାମ ବଦଳି ଏହା 'ଦେଶକଥା' ନାମରେ ୧୯୩୭ ପର୍ଯ୍ୟନ୍ତ ପ୍ରକାଶ ଲଭ କଲା । ୧୯୩୭ ଠାରୁ ୧୯୪୨ ମସିହା ପର୍ଯ୍ୟନ୍ତ ଏହା ଦୈନିକ ପତ୍ରିକା ରୂପେ ପ୍ରକାଶ ପାଇଥିଲା ।

ରାଜନୈତିକ ଜୀବନରେ ତାଂକର ପ୍ରକୃଷ୍ଟ ବନ୍ଧୁ ଥିଲେ ପଣ୍ଡିତ ଗୋଦାବରୀଶ ମିଶ୍ର । ସେ ରାଧାନାଥ ରଥ, ମହତାବ, ମଧୁବାରିଷ୍ଟର, ଗୋପବନ୍ଧୁ, ରାଜଗୋପାଳଚାରୀ, ରାଧାକ୍ରିଷ୍ଣନ, ପାରଳା ମହାରାଜା ପ୍ରମୁଖ ସ୍ୱଦେଶୀୟ ତଥା ଭାରତୀୟ ନେତୃବୃନ୍ଦଙ୍କ ସହ ସଂଯୋଗ ସ୍ଥାପନ କରିଥିଲେ । ବିହାର ଭୂମିକମ୍ପ ବର୍ଷ ଅର୍ଥାତ୍ ୧୯୩୨-୩୪ ମସିହା ପର୍ଯ୍ୟନ୍ତ ସେ ତତ୍‌କାଳୀନ କଟକ ମ୍ୟୁନିସିପାଲିଟିର କମିଶନର ଓ ପ୍ରେସିଡେଣ୍ଟ [ବର୍ତ୍ତମାନର ଚେୟାରମ୍ୟାନ] ଥିଲେ । ନଗେଂଦ୍ରବାବୁ ନିଜକୁ ଗୋପବନ୍ଧୁଂକର ମୃତ୍ୟୁର କାରଣ ବୋଲି କହି ଦୁଃଖ ପ୍ରକାଶ କରୁଥିଲେ । କାରଣ ନିଜର ଜଣେ କଲିକତା ନିବାସୀ ଅନ୍ତରଙ୍ଗ ବନ୍ଧୁଂକର ମୃତ୍ୟୁ ଦଶାହରେ ଯୋଗଦାନ କରିବା ପାଇଁ ବନ୍ୟାପ୍ଲାବିତ ବୈତରଣୀ ନଦୀରେ ପହଁରି ପାର ହୋଇ କଲିକତା ଯାଇଥିଲେ । ସେଠାରେ ବନ୍ୟା ପ୍ରପୀଡ଼ିତ

ଓଡ଼ିଶାବାସୀଙ୍କର ଦୁଃଖ ଦୁର୍ଦ୍ଦଶାକୁ ଗୋପବନ୍ଧୁଙ୍କୁ ଶୁଣାଇ ଓଡ଼ିଶା ଆସିବାକୁ ଅନୁରୋଧ କରିଥିଲେ । ଗୋପବନ୍ଧୁ ବନ୍ୟାଞ୍ଚଳ ଲୋକମାନଙ୍କୁ ସାହାଯ୍ୟ କରିବାକୁ ଆସି ଜ୍ୱରରୋଗରେ ଆକ୍ରାନ୍ତ ହୋଇ ମୃତ୍ୟୁବରଣ କରିଥିଲେ ।

ପରେ ସେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ପାରଳା ମହାରାଜାଙ୍କ ଗାର୍ଡ଼ିନ ପାର୍ଟିରେ ଯୋଗଦାନ କରିଥିଲେ । ପାରଳା ରାଜାଙ୍କର ଅଭିପ୍ରାୟ ଥିଲ ନରେନ୍ଦ୍ର ବାବୁଙ୍କ ହାତରେ ଥିବା ଦୁଇଜଣ ମେମ୍ବରଙ୍କୁ କରାୟତ୍ତ କରିବା । ସେ କଟକର ଜଣେ ବିଶିଷ୍ଟ ନେତୃସ୍ଥାନୀୟ ବ୍ୟକ୍ତି ଓ ସେବକ ଥିଲେ । ଦଶହରା ଓ ମୋହରମର କାର୍ଯ୍ୟକଳାପରେ ଅଂଶ ଗ୍ରହଣ କରୁଥିଲେ । ହିନ୍ଦୁ ମୁସଲମାନ ସଦ୍ଭାବ ଲାଗି ତତ୍କାଳୀନ ଉତ୍କଳ କଂଗ୍ରେସ ସଭାପତି ଏକରାମ ରସୁଲଙ୍କ ସହ କଟକର ୩ ଗୋଟି ବଡ଼ ମସଜିଦ୍‌କୁ ଯାଇ ବକ୍ତୃତା ପ୍ରଦାନ କରିଥିଲେ । ସେ ୧୯୨୯ ମସିହାରେ ବାସୁରୀ କର୍ତ୍ତନ ମଣ୍ଡଳୀ ପୀଠରେ 'ବାସୁରୀ ଠାକୁର ନିମ୍ନ ପ୍ରାଥମିକ ବିଦ୍ୟାଳୟ' ପ୍ରତିଷ୍ଠା କରିଛନ୍ତି ।

ବର୍ମା ଯୁଦ୍ଧରେ ସାହାଯ୍ୟ କରିବା ପାଇଁ ତତ୍କାଳୀନ ଓଡ଼ିଶା ଟେପ୍ଟେଲଟଙ୍କ ଆମନ୍ତ୍ରଣକୁ ସେ ପ୍ରଥମେ ଦୃଢ଼ତାର ସହ ପ୍ରତ୍ୟାଖ୍ୟାନ କରିଥିଲେ । କିନ୍ତୁ ଅଗତ୍ୟା ଉପାୟନ୍ତର ହୋଇ ବର୍ମାରେ ୩।୪ ମାସ ରହିଥିଲେ । ବର୍ମାରୁ ଫେରି କଲିକତାରେ ୪ବର୍ଷ ରହି ଶ୍ରମିକ ସଙ୍ଗଠନ ଓ ଦେଶୀୟ ବାଣିଜ୍ୟ ସଙ୍ଗଠନର ନେତୃତ୍ୱ ନେଇଥିଲେ । ଓକିଲାତି ପଢ଼ିବାରୁ ତାଙ୍କୁ ବଞ୍ଚିତ କରିବା ପାଇଁ ପ୍ରିନ୍ସିପାଲ ଚେଷ୍ଟା କରିଥିଲେ । ମାତ୍ର ଫର୍ମରେ 'ସାମ୍ବାଦିକତା' ବ୍ୟବସାୟ ବୋଲି ପୂରଣ କରିଥିବାରୁ ଅଭିଯୋଗ ମୁକ୍ତହୋଇ ଅଧ୍ୟୟନରେ ସୁଯୋଗ ଲାଭ କରିଥିଲେ । ସେ ପ୍ରାୟ ୧୦।୧୧ ବର୍ଷ କଟକରେ ଓକିଲାତି କରିଥିଲେ ।

ସାହିତ୍ୟିକ ଜୀବନ କ୍ଷେତ୍ରରେ ସେ ଛାତ୍ର ଜୀବନରୁ ନାଟକ ପ୍ରତି ଆକୃଷ୍ଟ ଥିଲେ । ଜୀବନରେ ନିଜେ ଗୋଟିଏ ନାଟ୍ୟଦଳ ଓ ରଙ୍ଗମଞ୍ଚ ନିର୍ମାଣ କରାଇ ଅନେକଗୁଡ଼ିଏ ନବ୍ୟ ରୁଚିସମ୍ପନ୍ନ ନାଟକ ଲେଖି ଅଭିନୟ କରାଇଥିଲେ । ତାଙ୍କର ଐକିକ ଚେଷ୍ଟା ପ୍ରସୂତ ୧୨୦୦ ଶତ ପୃଷ୍ଠା ବ୍ୟାପୀ 'ବିବିଧ

ରଣ୍ଡ ସୀଡ୍ସ୍’ ଓଡ଼ିଆ ଏନ୍‌ସାଇକ୍ଲୋପେଡ଼ିଆ ଗ୍ରନ୍ଥିକୁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ (୧. ୪. ୧୯୩୬) ଦିନ ତତ୍କାଳୀନ ଓଡ଼ିଶାର ଗଭର୍ଣ୍ଣର ସାର୍ ହବାକ୍‌ଙ୍କୁ ଉପହାର ଦେଇଥିଲେ। ଏହି ଧରଣର ସାଧନା ପରବର୍ତ୍ତୀ କାଳରେ ରାମକୃଷ୍ଣ ନନ୍ଦ, ବିନୋଦ କାନୁନ୍‌ଗୋଙ୍କ ଦ୍ୱାରା ଅନୁସୃତ ହେଉଛି। ତାଙ୍କର ସମସ୍ତ ପ୍ରକାଶନର ଦାୟିତ୍ୱ ବହନ କରିଥିଲେ କଟକ ମନମୋହନ ପୁସ୍ତକାଳୟ ଓ ପ୍ରେସର ସ୍ୱତ୍ୱାଧିକାରୀ ମୋହନଚରଣ ଦାସ। ତାଙ୍କ ରଚିତ ଜ୍ଞାନବିଜ୍ଞାନ—୧ମ ଓ ୨ୟ ଖଣ୍ଡ ପ୍ରାୟ ୬ଲକ୍ଷ ବହି ବିକ୍ରି ହୋଇଥିଲା। ନାନା କାରଣବଶତଃ ସେ ପ୍ରକାଶକଙ୍କ ଠାରୁ ପ୍ରାପ୍ୟ ପୂରା ରୟାଲଟି ଟଙ୍କାରୁ ବଞ୍ଚିତ ହୋଇଛନ୍ତି। ଏହି ଦୟନୀୟ ଅବସ୍ଥା ପ୍ରାୟ ଓଡ଼ିଶାର ପ୍ରତ୍ୟେକ ଲେଖକଙ୍କୁ ଅନ୍ତତଃ ବହୁତ ଅନୁଭବ କରିବାକୁ ପଡ଼ିଥାଏ। ଲେଖକଙ୍କର ଏହି ପୁସ୍ତକଟି ଅଶ୍ଳୀଳ ସାହିତ୍ୟ (Obscene literature) ବୋଲି କଲିକତା କୋର୍ଟରେ ସରକାରଙ୍କ ତରଫରୁ ମୋକଦ୍ଦମା ଦାୟର ହୋଇଥିଲା। ପ୍ରାୟ ୭°।୬୫ ଥର କଲିକତା ଦୌଡ଼ି ଲେଖକ ଶେଷରେ ଜନ୍ମମୁକ୍ତ ହୋଇଥିଲେ। ଏହା ଅସାମାଜିକ ବହି ନୁହେଁ ବୋଲି ସାବ୍ୟସ୍ତ ହେଲା। ନିଜର ଯୋଗ୍ୟତା ଓ ଗୁଣ ଯୋଗୁଁ ସେ ୬ ବର୍ଷ କାଳ ଉତ୍କଳ ବିଶ୍ୱବିଦ୍ୟାଳୟ ଅନୁକୂଲ୍ୟରେ ପ୍ରକାଶ ଲାଭ କରିଥିବା ‘ସଂକ୍ଷିପ୍ତ ଓଡ଼ିଆ ଭାଷାକୋଷ’ ସଂକଳନରେ ମାୟାଧର ମାନସିଂହଙ୍କ—ଅଧୀନରେ କାର୍ଯ୍ୟ କରିଥିଲେ। ଏହି ସମୟକାଳ ମଧ୍ୟରେ ସେ ତତ୍କାଳୀନ ଉପକୁଳପତି ପ୍ରାଣକୃଷ୍ଣ ପରିଜା, ସଦାଶିବ ମିଶ୍ର, ମହେଶଚନ୍ଦ୍ର ପ୍ରଧାନ ଓ ବାମାଚରଣ ଦାସଙ୍କର ସୁଦୃଷ୍ଟି ଆକର୍ଷଣ କରିପାରିଥିଲେ। ସେ ଏକାକୀ କିଛିଦିନ ପୂର୍ଣ୍ଣଭରସିଂହ ପ୍ରେସ ଗୁଳନା ଓ ବିଶ୍ୱକୋଷ ପ୍ରଣୟନର ଦାୟିତ୍ୱରେ ଥିଲେ। ମାତ୍ର ଶ୍ରମିକ ଆନ୍ଦୋଳନ ଓ ଅନ୍ୟାନ୍ୟ କାରଣରୁ ପ୍ରେସ୍ ବନ୍ଦ ହେବାରୁ ତାଙ୍କୁ ବାଧ୍ୟହୋଇ କର୍ମୀ ଜୀବନରୁ ଅବ୍ୟାହତି ନେବାକୁ ହେଲା।

ଏହି ସମୟରେ ତୁଳସୀପୁର ପୂର୍ଣ୍ଣଭରସିଂହ ପ୍ରେସ୍‌ଠାରେ ଆଫ୍ରିକା ନିବାସୀ ସାହେବ ସାହେବାଣୀଙ୍କ ଦ୍ୱାରା ଅନୁରୁଦ୍ଧ ହୋଇ

ସେ ଗୋଟିଏ ପ୍ରସିଦ୍ଧ ଇଂରେଜ ବହିକୁ ଅନୁବାଦ କରିଥିଲେ । ପୂର୍ବରୁ ଏହି କାର୍ଯ୍ୟ ଭାର ଯେଉଁମାନେ ଗ୍ରହଣ କରିଥିଲେ ତାହା ସମାପନ କରି ନ ପାରିବାରୁ ଲେଖକଙ୍କ ଉପରେ ତାହାର ଭାରନ୍ୟସ୍ତ ହୋଇଥିଲା । ସେ ଏହି କାର୍ଯ୍ୟକୁ ମାତ୍ର ୨୨ ଦିନରେ ସମାପ୍ତ କରି ୧୪୦୦୦ ଟଙ୍କା ପାଇଥିଲେ । ସେ କହନ୍ତି ସେ ଦିନକୁ ସେତେବେଳେ—୬୦ ଖଣ୍ଡ କାଗଜ ଲେଖି ପାରୁଥିଲେ । ଏହାପରେ ସେ (United Information Bureau) ସହ ସମ୍ପର୍କ ରକ୍ଷା କରି କିଛି ଅନୁବାଦ କରିଥିଲେ । ସେ ବର୍ତ୍ତମାନର ପ୍ରଫୁଲ୍ଲ ପ୍ରେସ୍‌ର ପ୍ରତିଷ୍ଠାତାଙ୍କ ସାହଚର୍ଯ୍ୟରେ ପ୍ରାୟ ୪୦ ଖଣ୍ଡରୁ ଊର୍ଦ୍ଧ୍ୱ ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ନାଟକାବଳୀ ଅନୁବାଦ କରିଛନ୍ତି । କର୍ମୀ ଜୀବନରେ ସେ ଥିଲେ ଜଣେ କଠୋରକର୍ମୀ, ଏକନିଷ୍ଠ ସାଧକ, ନିର୍ଭୀକଚେତା ଓ ବିପ୍ଳବୀ । ଅନ୍ୟାୟକୁ ସାଲିସ୍ କରିବାରେ ସେ ପକ୍ଷପାତି ନୁହଁନ୍ତି ।

## ସାହିତ୍ୟିକ ଜୀବନ—

ପିଲାଦିନରୁ ନଗେନ୍ଦ୍ର ବାବୁଙ୍କର ସାମ୍ବାଦିକତା ଓ ସାହିତ୍ୟ ପ୍ରତି ପ୍ରଗାଢ଼ ଅନୁରକ୍ତି ଥିଲା । ବଡ଼ବାବା ମଗାଉଥିବା ଉତ୍କଳଦୀପିକା ବ୍ୟତୀତ ବଙ୍ଗବାସୀ ଓ ହିତବାଦୀ ସାପ୍ତାହିକ ବଙ୍ଗଳା ପତ୍ରିକା ସେ ପିଲାଦିନୁଁ ଅଧ୍ୟୟନ କରୁଥିଲେ । ପ୍ରମଥ ନାଥରାୟଙ୍କଠାରୁ ଧାରଣାୟ ବରୋଦ୍ଧି 'Englishman ପତ୍ରିକା ପଢ଼ୁଥିଲେ । ତାଳଚେର ଅଧ୍ୟୟନ କାଳରେ କାକା ଆଣୁଥିବା 'ଅମୃତ ବଜାର ପତ୍ରିକା' ଉତ୍କଳଦୀପିକା, ସମ୍ବଲପୁର ହିତୈଷିଣୀ, ସମ୍ବାଦ ବାହିକା ଓ ଗଡଜାତ ବାସିନୀ ପଢ଼ୁଥିଲେ । ଏହିପରି ବିଭିନ୍ନ ପତ୍ରପତ୍ରିକାର ସମ୍ପର୍କ ତାଙ୍କୁ ଭବିଷ୍ୟତରେ ଜଣେ ସାମ୍ବାଦିକ ଓ ସମ୍ପାଦକ ହେବାର ସୁଯୋଗ ଦେଇଥିଲା ।

ସେ ସାହିତ୍ୟ ଓ ଦେଶସେବା କ୍ଷେତ୍ରରେ ବିଶ୍ୱନାଥ କର, ଗୌରୀ-ଶଙ୍କର ଓ ରାମଶଙ୍କର ରାୟ, ବ୍ରଜସୁନ୍ଦର ଦାସ, ସୁଦାମଚରଣ ନାୟକ, ବିଚିତ୍ରାନନ୍ଦ ଦାସ, ଶଶୀଭୂଷଣ ରାୟ, ଗୋପାଳଚନ୍ଦ୍ର ପ୍ରହରାଜ, କଳ୍ପତରୁ

ଦାସ, ଭଗବାନ ଚରଣ ପଟ୍ଟନାୟକ, ମୃତ୍ୟୁଞ୍ଜୟ ରଥ, ଚନ୍ଦ୍ରମୋହନ ମହାରଣା, ବାଣୀଭୂଷଣ ଶଶୀଭୂଷଣ ରାୟ, କନିକା 'ମଧୁପୁର' ରାଜାଙ୍କର, କେନ୍ଦୁଝରର ହିନ୍ଦୋଳ, ଢେଙ୍କାନାଳ, ଆଠଗଡ଼ ପ୍ରଭୃତି ରାଜାଙ୍କ ସହ ସମ୍ପର୍କ ପ୍ରତିଷ୍ଠା କରି ପାରିଥିଲେ । ଯୌବନ କାଳରେ ସେ 'ଉତ୍କଳ ସାହିତ୍ୟ ସମାଜ'ର କାର୍ଯ୍ୟ ନିର୍ବାହକ କମିଟିର ସଭ୍ୟ ଥିଲେ । ତତ୍କାଳୀନ ସମ୍ପାଦକ ଥିଲେ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ । ଲଲ୍ ନଗେନ୍ଦ୍ର କୁମାର ରାୟଙ୍କ ସାହିତ୍ୟିକ କୃତିଗୁଡ଼ିକ ହେଉଛି—

୧ । ଶେଷ ସ୍ୱାଧୀନତା (ନାଟକ—ପ୍ରକାଶକାଳ-୧୯୩୧) ଏହି ନାଟକଟି କଟକ ମେଡ଼ିକାଲ ସ୍କୁଲରେ ଅଭିନୀତ ହେବା ପାଇଁ ସେ ଏହାକୁ ୭ ଦିନରେ ଲେଖିଥିଲେ ଓ ପରେ ଏହା କଲିକତାରେ ଅଭିନୀତ ହୋଇଥିଲା । ୧୬ଶ ଶତାବ୍ଦୀର ଓଡ଼ିଶାର ଜାତୀୟତା ସଙ୍କଟ ଉପରେ ଏହା ଆଧାରିତ । ହିନ୍ଦୁ-ମୁସଲମାନ ଅସ୍ପୃଶ୍ୟତା ନିବାରଣ ଲାଗି ଏଥିରେ ନାଟ୍ୟକାର ପ୍ରୟାସ କରିଛନ୍ତି ।

୨ । 'କଳିଙ୍ଗ ବିଜୟ' ନାଟକ । ଏହା ଲେଖି ନାଟ୍ୟକାର କଳାହାଣ୍ଡି ପୁରସ୍କାର ପ୍ରାପ୍ତ ହୋଇଥିଲେ । (ଏହା ବ୍ୟତୀତ ନାଟ୍ୟକାର ଆଉ କେତେଗୋଟି ନାଟକ ଲେଖିଥିବାର ଜଣାଯାଏ ।)

୩ । କାମ ବିଜ୍ଞାନ—୧ମ ଓ ୨ୟ ଖଣ୍ଡ (ପ୍ରକାଶକାଳ—୧୯୪୫) ।

୪ । ବିବିଧ ରତ୍ନ ସଂଗ୍ରହ (Oriya Encyclopedia) ।

୫ । ଏହା ବ୍ୟତୀତ ଅନୁବାଦକ ଭାବରେ ସେ ଦୁଇଥିବା ପ୍ରସିଦ୍ଧ ଓ ନୋବେଲ ପୁରସ୍କାର ବିଜେତା । ପ୍ରାୟ ୪୦ ଖଣ୍ଡ ପର୍ଯ୍ୟନ୍ତ ଉପନ୍ୟାସ ଓ ନାଟକର ନିଖୁଣ ଅନୁବାଦ କରିଛନ୍ତି । ଜାଁ କ୍ରିସ୍ତଫରୋମାଲେଁ (ପ୍ର-୧୯୧୫), ବାରବାସ—ପାରଲାଗର୍କ ଭିଷ୍ଟ୍ର (ପ୍ର-୧୯୫୧) ସ୍ୱାଧୀନ ମାନବ—ହାରଲଡ ଲକ୍ସବେସା (ପ୍ର-୧୯୫୭) ପ୍ରଭୃତି ବହୁ ବିଶ୍ୱବିଖ୍ୟାତ ଲେଖକମାନଙ୍କର କୃତି ଅନୁବାଦକ ।

୬ । ମୋ ଦେଖା ଓଡ଼ିଶା—୧୯୦୭-୧୯୭୫ । ଏହି ଆତ୍ମଜୀବନୀ ପ୍ରନ୍ଥି ଧାରାବାହିକ ରୂପେ ଓଟର ପତ୍ରିକାରେ ପ୍ରକାଶ ପାଉଛି ।

ସାହିତ୍ୟର ବିଭିନ୍ନ କ୍ଷେତ୍ରରେ ତାଙ୍କର ଅବଦାନ ରହିଥିଲେ ହେଁ ଅନୁବାଦ କ୍ଷେତ୍ରରେ ତାଙ୍କର ନିଜସ୍ୱ ମୌଳିକତା ଓ ଶୈଳୀ ପାଠକର ଦୃଷ୍ଟି ଆକର୍ଷଣ କରିଥାଏ । ତାଙ୍କର ସାହିତ୍ୟ ସମ୍ବନ୍ଧରେ ମତ ହେଉଛି ଜୀବନରେ ବୈଚିତ୍ର୍ୟ ନ ଥିଲେ ଉପନ୍ୟାସ ଲେଖା ଯାଇପାରେନା । ଅନୁବାଦ କ୍ଷେତ୍ରରେ ବିଦେଶୀୟ ନାମକୁ ଭାରତୀୟ ନାମ ନେଇ ଦେଲେ ତାହା ଦେଶୀୟ ହୋଇଯିବ ନାହିଁ । ନୂଆପଣ ବୈଚିତ୍ର୍ୟ ହେଉଛି ସାହିତ୍ୟର ସମ୍ପଦ । ବିଦେଶୀ ଲେଖକମାନଙ୍କର ମଧ୍ୟ ପ୍ରାଚ୍ୟଚେତନା ବୋଧ ରହିଛି । ସେ ଗୋଟିଏ ଆମେରିକାର ଦାର୍ଶନିକ ଉପନ୍ୟାସକୁ ନିଖୁଣ ଭାବେ ଅନୁବାଦ କରିଛନ୍ତି । ଅନୁବାଦରେ ସଠିକତା ଓ ଯଥାର୍ଥତା ପ୍ରତି ସେ ଅଧିକ ଗୁରୁତ୍ୱ ଆରୋପ କରନ୍ତି ।

ସାଂସାରିକ ଜୀବନରେ ଏହି ବିଶିଷ୍ଟ ଅନୁବାଦକ ପାଞ୍ଚଟି କନ୍ୟା ଓ ତିନୋଟି ପୁତ୍ର ସନ୍ତାନର ଜନକ ଅଟନ୍ତି । ନରେନ୍ଦ୍ରବାବୁ ଜଣେ କର୍ମଯୋଗୀ । ଏବେ ମଧ୍ୟ ହୃଦରୋଗରେ ଆକ୍ରାନ୍ତ ଓ ଚଳନ୍ତି ଅକ୍ଳାନ୍ତ ଲେଖକଙ୍କର କଲମର ବିରାମ ନାହିଁ । ଏପରି ଜଣେ ନିରବଚ୍ଛିନ୍ନ ସାଧକ, ନିର୍ଭୀକଚେତା କର୍ମ-ଗୁଣୀ ବ୍ୟକ୍ତିଙ୍କର ପ୍ରତିଭା ପୂଜା ଓ ଗୁଣଗାନ ହେଲେ ଭବିଷ୍ୟତର ଦାୟାଦମାନେ ସେ ପ୍ରେରଣା ଲଭି ଜୀବନ କ୍ଷେତ୍ରରେ ଅଗ୍ରସର ହେବେ ଏହା ନିଃସଂଦେହ ।



# ସଙ୍ଗୀତ ସୁଧାକର ବାଳକୃଷ୍ଣ ଦାଶ

**ଶ୍ରୀ ଭଗୀରଥି ନେପାକ**

"ଜଗତ ସରସ, ସୁନ୍ଦର, ମଧୁର । ଜୀବନ ଆନନ୍ଦମୟ । ହସି ହସାଇ, ରସି ରସାଇ, ମଜ୍ଜି ମଜାଇ ସମୟ ବିତେଇ ଦେବାର ଅନ୍ୟ ନାମ ଜୀବନ । ଦିନ ଓ ରାତି ପରି, ସୁଖ ଓ ଦୁଃଖର ଚକ ଘୂରୁଛି । କେତେ-ବେଳେ ଖରା, କେତେବେଳେ ବର୍ଷା, ପୁଣି କେତେବେଳେ ହସନ୍ତି ବସନ୍ତ— ଏହାହିଁ ଜୀବନ, ଏହାହିଁ ଏ ଜୀବନର ଇତିହାସ । ଭଲ ମନ୍ଦ, ସୁଖ ଦୁଃଖ, ଜୟ ପରାଜୟ ସବୁକିଛି ନିତିଦିନିଆ ଘଟଣା ପରି ଅଙ୍ଗେ ନିଭାଇବ ଓ ପୁଣି ତାକୁ ଭୁଲିଯିବ । କାରଣ ସମୟର ସ୍ରୋତରେ ସବୁକିଛି ଚାଲିଯାଏ, ତାକୁ ମନେରଖି ଲାଭ ନାହିଁ ।" ଏହିପରି ଏକ ଧାରଣାରେ ଉପନୀତ ହେଲି ଓଡ଼ିଶାର ପ୍ରଖ୍ୟାତଯଶା, ସଙ୍ଗୀତ ସୁଧାକର ବାଳକୃଷ୍ଣ ଦାଶଙ୍କ ସଙ୍ଗରେ ସାକ୍ଷାତ କରି ।

ସେ ଦିନ ରବିବାର । ଛୁଟିଦିନ, ଅଳସୁଆ ଦିନ । ବସି ବସି ଗପ କରିବା ଦିନ । ବାଳକୃଷ୍ଣ ବାବୁଙ୍କ ସଙ୍ଗେ ସାକ୍ଷାତ କରିବା, ପୁଣି ସାକ୍ଷାତକାରୀ ବିବରଣୀ ସଂଗ୍ରହ କରିବା ମୋ' ପକ୍ଷରେ ଆକର୍ଷଣୀୟ କାର୍ଯ୍ୟକ୍ରମ ଥିଲା । ଇତି ପୂର୍ବରୁ ତାଙ୍କର ସଙ୍ଗୀତ ଶୁଣି ମୁଗ୍ଧ ହୋଇଥିଲି । କିନ୍ତୁ ସାକ୍ଷାତ ଆଲୋଚନାର ସୁଯୋଗ ଲାଭ କରିପାରି ନଥିଲି । ଉତ୍କଳ ପାଠକ ସଂସଦ ମୋତେ ଏ ସୁଯୋଗ ଦେଲା । ବସା ଠିକଣା ଜାଣି ନ ଥିବାରୁ ଏ. ଜି. କଲୋନୀର ଜଣେ ପାନଦୋକାନୀକୁ ପଚାରିଲି । ଦେଖି

ଆଶ୍ଚର୍ଯ୍ୟ ହେଲି, ମୋ' କହିବା ପ୍ରାୟ ସମସ୍ତେ ତାଙ୍କୁ ଚିହ୍ନନ୍ତି ଓ ଜାଣନ୍ତି । ସେହି ପାନଦୋକାନୀ ମୋତେ ବାଳକୃଷ୍ଣ ବାବୁଙ୍କ ଘରେ ପହଞ୍ଚାଇ ଦେଲେ ।

ଦେହ୍‌ ଦୃଷ୍ଟ ସୁନ୍ଦର ରୂପ, ଲୋଭମନ୍ଦ ସ୍ୱାସ୍ଥ୍ୟ, ପଚାଶ ବର୍ଷ ବୟସ ଅତିକ୍ରମ କରିଯାଇଥିଲେ ବି କଥୋପକଥନରେ ଯୁବଜନୋଚିତ ଉଦ୍ଦାମତା ରହିଛି । ସବୁ କଥା ମଧୁଝରା: ପଦେ କଥାବି ଲାଇନ୍‌ଚ୍ୟୁତ ନୁହେଁ, ମଜାଗ ବ୍ୟବହାରୀ, ପ୍ରତ୍ୟେକ ଶବ୍ଦ ଚରିତ୍ରକୁ ଆପଣାର କରିନେବା କଳା, ଅପରିଚିତଙ୍କୁ ବନ୍ଧୁତା ଡୋରରେ ବାନ୍ଧି ନେବାର ପ୍ରୟାସ—ଏଇ ହେଲେ ଓଡ଼ିଶାର ବିଶିଷ୍ଟ କଳାକାର ଶ୍ରୀ ବାଳକୃଷ୍ଣ ଦାଶ ।

ତାଙ୍କ ଗୀତର ସ୍ୱର ଗୁଞ୍ଜେ ଚଳଚ୍ଚିତ୍ରରେ, ନାଟକ ରଙ୍ଗମଞ୍ଚରେ, ରେଡ଼ିଓରେ, ଗ୍ରାମ୍‌ଫୋନ ରେକର୍ଡରେ । ସତେ ଅବା ସେ ସର୍ବବ୍ୟାପୀ । ଓଡ଼ିଶୀ ସଙ୍ଗୀତ ଓ ଜଣାଣ କହିଲେ ସଙ୍ଗୀତ ପ୍ରେମୀମାନେ ସ୍ମରଣ କରନ୍ତି ବାଳକୃଷ୍ଣ ବାବୁଙ୍କୁ । ଶତ ମୁଖରେ ତାଙ୍କର ପ୍ରଶଂସା । ସହସ୍ର କଣ୍ଠରେ ତାଙ୍କର ଜୟଧ୍ୱନି ।

ମୋତେ ଦେଖି ଆନନ୍ଦ ଗଦ୍ ଗଦ୍ ହୋଇ କହିଲେ ସେ—"ବସନ୍ତୁ ।" ବ୍ୟବହାର ପ୍ରୀତିପ୍ରଦ, ଆନ୍ତରିକତାପୂର୍ଣ୍ଣ ।

ଏଇ ବିଖ୍ୟାତ ସଙ୍ଗୀତଜ୍ଞଙ୍କର ନିଜ ଘର ବାଲକାଟି ଶାସନ, ଜିଲ୍ଲା – ପୁରୀ ।

ଜନ୍ମ ୧୯୨୩ ମସିହା ଜ୍ୟେଷ୍ଠ ଅମାବାସ୍ୟା ଦିନ । ଝିଅଟିଏ ହୋଇଥିଲେ ଉଆଁସୀ କନ୍ୟା ହୋଇ ଅଚଳନ୍ତି ହୋଇଥାନ୍ତେ ପରା ! ପୁଅ ହୋଇଥିବାରୁ ସଙ୍ଗୀତ ଶାସ୍ତ୍ରରେ ପୂର୍ଣ୍ଣିମାର ପୂର୍ଣ୍ଣତା ଲାଭ କଲେ !!

ତାଙ୍କ ପିତାଙ୍କ ନାମ ଦୀନବନ୍ଧୁ ଦାଶ ଓ ମାତାଙ୍କ ନାମ କମଳା ଦେବୀ ।

ଜନ୍ମସ୍ଥାନ ବାଲକାଟି ଶାସନର ଶ୍ରେଷ୍ଠ ଚାଟଶାଳୀରେ ହିଁ ଖଡ଼ି ଛୁଇଁ ପାଠ ପଢ଼ିଲେ । ଚାହାଳୀ ଅବଧାନ ଧର୍ମାନଂଦ ଦାଶ କେବଳ ଚାହାଳୀ ପାଠ ନୁହେଁ, ଛାଂଦ, ଚଉପଦୀ ଇତ୍ୟାଦି ବିଭିନ୍ନ ରାଗରାଗିଣୀର ସଙ୍ଗୀତ ବୋଲାଉଥିଲେ । ଚାହାଳୀ ଶିକ୍ଷକ ଧର୍ମାନଂଦଙ୍କର ସଙ୍ଗୀତ ପ୍ରତି ଆକର୍ଷଣ ଅଗାଧ ଥିଲା । ସେ ତାଙ୍କର ଚାଟମାନଙ୍କ କଣ୍ଠରେ ସଙ୍ଗୀତ ଶ୍ରବଣ କରି ମୁଗ୍ଧ ହେଉଥିଲେ । ବାଳକ ବାଳକୃଷ୍ଣଙ୍କ ମନରେ ସେ ଯେ ଅନନ୍ତ ସଙ୍ଗୀତ ପିପାସାର ବୀଜ ବପନ କରିଥିଲେ, ଏଥିରେ ସଂଦେହ ନାହିଁ । ଏହି ଚାହାଳୀପାଠ ପଢ଼ାବେଳୁ ବାଳକୃଷ୍ଣ ଛାଂଦ, ଭଜନ, ଚଉପଦୀ ଇତ୍ୟାଦି ଗାନ କରିବା ଆରମ୍ଭ କରିଥିଲେ ।

ବାଲକାଟି ଶାସନରୁ ସେ ସିଧା ଆସିଲେ ଭୁବନେଶ୍ୱର । ଭୁବନେଶ୍ୱରର ସଂସ୍କୃତ ଟୋଲ୍ ତାଙ୍କର ଶିକ୍ଷା, ସାଧନାର ପ୍ରଧାନ ପୀଠ ପାଲଟି ଗଲା । ସେତେବେଳେ ଭୁବନେଶ୍ୱର ସଂସ୍କୃତ ଟୋଲ୍‌ର ଅଧ୍ୟକ୍ଷ ଥାଆନ୍ତି ପଣ୍ଡିତ ବନମାଳୀ ମିଶ୍ର । ତାଙ୍କ ତତ୍ତ୍ୱାବଧାନରେ ରହି ସେ ସଂସ୍କୃତ ଶିକ୍ଷା ଲାଭ କଲେ ।

ବାଲକାଟିରୁ ଭୁବନେଶ୍ୱର ହେଇ ଶେଷରେ ସେ ପହଞ୍ଚିଲେ ଓଡ଼ିଶାର ଅନ୍ୟତମ ପ୍ରାଣକେନ୍ଦ୍ର କଟକ ସହରରେ । ସେତେବେଳେ କଟକରେ ବାଲକାଟି ମକଦ୍ଦମ ମେସ୍ ଥିଲା । ମେସ୍‌ର ଅନ୍ୟତମ ସଭ୍ୟଥିଲେ ସଙ୍ଗୀତ ପ୍ରବର ବାଳକୃଷ୍ଣ ମହାନ୍ତି । ତାଙ୍କର ଉପସ୍ଥିତିରେ ବାଲକାଟି ମକଦ୍ଦମ ମେସ୍ ସଙ୍ଗୀତ ଚର୍ଚ୍ଚାରେ ସରଗରମ ହୋଇ ଉଠୁଥିଲା । ତାଙ୍କର ସାନ୍ନିଧ୍ୟ ଲାଭ କରି ଯୁବକ ବାଳକୃଷ୍ଣ ନିଜକୁ ଧନ୍ୟମନେ କଲେ । ଅତି ବାଲ୍ୟକାଳରୁ ବାଳକୃଷ୍ଣ ବାବୁଙ୍କ ମନ ଭିତରେ ସଙ୍ଗୀତର ନିଶା ଥିଲା । ବର୍ତ୍ତମାନ ସେ ନିଶାରେ ବାଳକୃଷ୍ଣ ବାବୁ ଘାରିହେଲେ । ତାଙ୍କ ଆଖିରେ, ପ୍ରାଣରେ ସଙ୍ଗୀତ ନିଶା ଟୁକୁ ଟୁକୁ ହେଲା । ସଙ୍ଗୀତଜ୍ଞ ବାଳକୃଷ୍ଣ ମହାନ୍ତି ସେ ନିଶାକୁ ଆହୁରି ପ୍ରଖର କଲେ ।

ସଙ୍ଗୀତ ସୁଧାକର ଶ୍ରୀ ବାଳକୃଷ୍ଣ ଦାସ ମୁକ୍ତ କଣ୍ଠରେ ସ୍ୱୀକାର କରନ୍ତି ଯେ, ବାଳକୃଷ୍ଣ ମହାନ୍ତିଙ୍କ ପ୍ରେରଣା ତାଙ୍କୁ ସଙ୍ଗୀତକଳା ପ୍ରତି ଆସକ୍ତ କରିଥିଲା ।

ସେତେବେଳେ ଓଡ଼ିଶାରେ ମାତ୍ର କେତେଜଣ ସଙ୍ଗୀତ କଳାକାର ଥିଲେ । ପ୍ରଫୁଲ୍ଲ ବାନାର୍ଜି, କମଳ ହରିଚନ୍ଦନ ଓ ଅପର୍ଣ୍ଣା ପାଣିଗ୍ରାହୀ (ପାରଳା ଖେମୁଣ୍ଡି)ଙ୍କ କେଇଖଣ୍ଡ ରେକର୍ଡ ବାହାରିଥାଏ । ସଙ୍ଗୀତ ଶିକ୍ଷକ ଓ ଛାତ୍ରମାନେ ସେମାନଙ୍କ ନାମ ଉଚ୍ଚାରଣ କରି ନିଜକୁ ଧନ୍ୟ ମନେ କରୁଥାନ୍ତି । ଯୁବକ ବାଳକୃଷ୍ଣଙ୍କ ମନେ ଭିତରେ ଇଚ୍ଛା ଜାଗ୍ରତ ହେଲା, ତାଙ୍କର ବି' କିଛି ରେକର୍ଡ ହୁଅନ୍ତା ।

ମଣିଷର ସବୁ ଇଚ୍ଛା ସବଦା ଫଳବତୀ ହୁଏ ନାହିଁ । ଇଚ୍ଛା ପଛରେ ସମସ୍ତ ଶକ୍ତି ସାମର୍ଥ୍ୟ ବିନିଯୋଗ କରି ତାକୁ ହାସଲ କରିବାକୁ ପଡ଼ିଥାଏ । ସେଥିପାଇଁ ଅନେକ ସାଧନା ଓ ସ୍ୱାର୍ଥତ୍ୟାଗ ଆବଶ୍ୟକ । ଥୋକାଏ ଲୋକ ଅଛନ୍ତି, ଇଚ୍ଛା-ପଥରେ ଥୋକେ ବାଟ ଆଗେଇ ଯାଇ ହତାଶ ହୋଇ ପଡ଼ନ୍ତି । 'ନା, ହବ ନାହିଁ' କହି ବିମୁଖତା ପ୍ରକାଶ କରନ୍ତି । ସେମାନଙ୍କ ପାଇଁ ସେହି ମହାନ୍ ଇଚ୍ଛା ଅଲଭ୍ୟ ହୋଇ ରହିଯାଏ । କିନ୍ତୁ ଆଉ ଥୋକାଏ ଅଛନ୍ତି, ଯେଉଁମାନେ ନିଜ ଇଚ୍ଛା ଚରିତାର୍ଥ କରିବା ଉଦ୍ଦେଶ୍ୟରେ ଜୀବନ ମୂର୍ଚ୍ଛା ଉଦ୍ୟମ କରନ୍ତି । 'ଇଚ୍ଛା' ଏଇ ପର୍ଯ୍ୟାୟର କେତେ ଜଣକର ଦାସତ୍ୱ ସ୍ୱୀକାର କରେ ।

କଳା କ୍ଷେତ୍ରରେ ଯେଉଁ ସାଧନା କରିବାକୁ ପଡ଼େ; ତାର ପଟାନ୍ତର ନାହିଁ । ସାଧକ ତାର ବ୍ୟକ୍ତିଗତ ଜୀବନର ସୁଖ ଦୁଃଖ ଜୟ ପରାଜୟ ଭଲ ମନ୍ଦ ସବୁ କିଛି ଜଳାଞ୍ଜଳି ଦେଇ ଈପ୍ସିତ ଲକ୍ଷ୍ୟ ହାସଲ ଦିଗରେ ଧ୍ୟାନ ଦିଏ । ଏହିପରି ଏକ ସଂଗ୍ରାମମୟ ପରିସ୍ଥିତିରେ ପଡ଼ି ହନ୍ତସନ୍ତ ହେଉଥିବା ଏକ କଳାକାରକୁ ଦେଖିଲେ ସଂସାରୀମାନେ ତାକୁ 'ପାଗଳ' ବୋଲି କହିଥାନ୍ତି ।

ପ୍ରତିଷ୍ଠିତ କଳାକାର ବାଳକୃଷ୍ଣବାବୁଙ୍କ ସଂଗ୍ରାମୀ ଜୀବନର ଉପରକୁ ଦେଖି ତାଙ୍କୁ ଯେ କେତେଜଣ ସଂଧାଣ ଲୋକ ପାଗଳ କହୁ ନ ଥିବେ; ଏଥିରେ ସଂଦେହ ନାହିଁ ।

କଟକ ଅବସ୍ଥାନ କାଳରେ ପ୍ରଖ୍ୟାତ କଳାକାର ବାଳକୃଷ୍ଣ ଦାଶ ସଙ୍ଗୀତ ଶିକ୍ଷାରେ ପରୁ ମଜ୍ଜିଗଲେ । ସେତେବେଳର ଲବ୍ଧ ପ୍ରତିଷ୍ଠ ଓଡ଼ିଶୀ ସଙ୍ଗୀତଜ୍ଞ ଗୋକୁଳ ଚନ୍ଦ୍ର ଶ୍ରୀଚଂଦନଙ୍କ ନିକଟରୁ ସେ ଓଡ଼ିଶୀ ଶିକ୍ଷା କରିବାକୁ ଲାଗିଲେ । ପୁଣି କ୍ଷିତିଶ ଚଂଦ୍ର ମୈତ୍ର ତାଙ୍କୁ ହିଂଦୁସ୍ଥାନୀ କଣ୍ଠ ସଙ୍ଗୀତ ଶିକ୍ଷାଦାନ କରୁଥିଲେ । ୧୯୪୦ ମସିହାରେ ଯେଉଁ କଣ୍ଠ ସଙ୍ଗୀତ ପ୍ରତିଯୋଗିତା ହେଲା; ସେଥିରେ ବାଳକୃଷ୍ଣ ବାବୁ ପ୍ରଥମ ସ୍ଥାନ ଅଧିକାର କରି ସର୍ବଜନବନ୍ଦିତ ହେଲେ ।

୧୯୪୦ ମସିହାଠାରୁ ୧୯୪୭ ମସିହା ପର୍ଯ୍ୟନ୍ତ ସଙ୍ଗୀତଜ୍ଞ ବାଳକୃଷ୍ଣ ଦାଶ ଏକପ୍ରକାର ଖୁବ୍ କାର୍ଯ୍ୟବ୍ୟସ୍ତ ରହିଲେ । ଏହି ସମୟରେ ସେ କଲିକତାରେ ରହି ଧୀରେଂଦ୍ର ଚଂଦ୍ର ମୈତ୍ର ଓ ଓସ୍ତାଦ୍ ବଡ଼େ ଗୋଲାମ୍ ଅଲିଖାଁ ସାହେବଙ୍କ ପରି ସୁପ୍ରସିଦ୍ଧ କଣ୍ଠ ସଙ୍ଗୀତ ବିଶାରଦମାନଙ୍କ ପାଖରୁ ହିଂଦୁସ୍ଥାନୀ କଣ୍ଠ ସଙ୍ଗୀତ ଶିକ୍ଷା କରୁଥିଲେ । ଏହି ଆଠବର୍ଷ ଧରି 'ନ୍ୟୁଥିଏଟର୍ସ୍ ଷ୍ଟୁଡ଼ିଓ କଲିକତା' ସଙ୍ଗେ ଘନିଷ୍ଠ ଭାବରେ ସମ୍ପୃକ୍ତ ଥିଲେ ।

କଲିକତା ରହଣି କାଳ ମଧ୍ୟରେ ଅଲ୍ ଇଣ୍ଡିଆ ରେଡ଼ିଓରେ ଓଡ଼ିଆ ବିଭାଗ ଖୋଲିଲା । ବାଳକୃଷ୍ଣବାବୁ ଏ: ଆଇ: ଆର୍‌ର ଓଡ଼ିଆ ବିଭାଗ ସଙ୍ଗରେ ସଂଶ୍ଳିଷ୍ଟ ହୋଇ ପଡ଼ିଲେ । ସେ ସେତେବେଳର କଥା ସ୍ମରଣ କରି କହନ୍ତି—ତାଙ୍କ ସମେତ ସିଂହାସୀ ଶ୍ୟାମ ସୁଂଦର କର, ବାଣୀ ପତି, ବାଣୀ ମିଶ୍ର ପ୍ରମୁଖ ମଧ୍ୟ ଓଡ଼ିଆ ବିଭାଗରେ ସେତେବେଳେ ଅଂଶ ଗ୍ରହଣ କରୁଥିଲେ ।

ଏହିପରି ଭାବରେ ବେତାର ବିଭାଗରେ ସେ ଆଜକୁ ୩୫ ବର୍ଷ ହେଲା ସଂଯୋଗ ଓ ସହଯୋଗ ସ୍ଥାପନ କରି ଆସିଛନ୍ତି ।

ତାପରେ ୧୯୪୮ ମସିହାରେ କଟକରେ ବେତାର କେନ୍ଦ୍ର ସ୍ଥାପିତ ହେବା ପରେ ବାଳକୃଷ୍ଣବାବୁ ମଧ୍ୟ କଲିକତାରୁ କଟକ ଚାଲି ଆସିଲେ ।

କଲିକତା ରହଣି କାଳ ମଧ୍ୟରେ ସେ ବଙ୍ଗଳା ଚିତ୍ର 'ଉଦୟେର୍ ପଥେ'ରେ ହେମନ୍ତବାବୁଙ୍କ ସଙ୍ଗରେ ଏକାଠି ବଙ୍ଗଳା ଗୀତ ଗାଇଥିଲେ । ପୁଣି 'ଉଁଚନୀଚ୍' ନାମକ ହିନ୍ଦୀ ଚଳଚ୍ଚିତ୍ରରେ ମଧ୍ୟ ସେ ଥିଲେ ପରଦା ପ୍ରଚ୍ଛଦ ଗାୟକ ।

ଜଣେ ଓଡ଼ିଆ ସଙ୍ଗୀତ ଶିଳ୍ପୀ ବଙ୍ଗଳା ଓ ହିନ୍ଦୀ ଚଳଚ୍ଚିତ୍ରରେ ଗାଇବା ପାଇଁ ସୁଯୋଗ ଲାଭ କରିବା ସାମାନ୍ୟ କଥା ନୁହେଁ । ଏହି ଦୃଷ୍ଟିରୁ ବାଳକୃଷ୍ଣବାବୁ ଅଭିନନ୍ଦନୀୟ ।

ଏହା ପରେ ୧୯୪୮ରୁ ଆଜି ପର୍ଯ୍ୟନ୍ତ ସେ ଓଡ଼ିଆ ଚଳଚ୍ଚିତ୍ରରେ ବିଭିନ୍ନ ଦାୟିତ୍ୱ ନିର୍ବାହ କରି ଚାଲିଛନ୍ତି । ଭାଇ ଭାଇ, ଅଦିନମେଘ, ଅମଡ଼ାବାଟ, ନବଜନ୍ମଠାରୁ ଆରମ୍ଭ କରି ଆହୁରି କେତେ କଣ । କେଉଁ ଚଳଚ୍ଚିତ୍ରରେ ସଙ୍ଗୀତ ନିର୍ଦ୍ଦେଶନା ଦାୟିତ୍ୱ ବହନ କରିଛନ୍ତି ତ, ଆଉ କେଉଁଠି ପ୍ରଚ୍ଛଦ ଗାୟକର ଭୂମିକାରେ ଅବତୀର୍ଣ୍ଣ ହୋଇଛନ୍ତି । ଯେତେବେଳେ ଯେଉଁ ଦାୟିତ୍ୱ ତୁଲାଇବାକୁ ଅନୁରୋଧ ଆସିଛି, ତାକୁ ନିର୍ବିବାଦରେ ସମ୍ପାଦନ କରିଛନ୍ତି ।

ଭଜନ, ଜଣାଣ, ଓଡ଼ିଶୀ ମିଶି ତାଙ୍କର ସମୁଦାୟ ଦଶଟି କମ୍ପାନି ଦ୍ୱାରା ପ୍ରସ୍ତୁତ ରେକର୍ଡ ରହିଛି ।

ଇତି ମଧ୍ୟରେ ଓଡ଼ିଶା ସରକାରଙ୍କ ଲୋକ ସମ୍ପର୍କ ବିଭାଗ ତରଫରୁ ଯେଉଁ ୪୨ଟି ଶାସ୍ତ୍ରୀୟ ଗୀତ ରେକର୍ଡ କରାଗଲା, ସେ ସମସ୍ତ ରେକର୍ଡ ବାଳକୃଷ୍ଣ ବାବୁଙ୍କ ନିର୍ଦ୍ଦେଶନାରେହିଁ କରାଯାଇଛି । ଏଥିରୁ କବିସୂର୍ଯ୍ୟ, ଗୋପାଳକୃଷ୍ଣ, ବନମାଳୀ ଇତ୍ୟାଦି ବିଖ୍ୟାତ କବିମାନଙ୍କର ଓଡ଼ିଶୀ ଓ ଜଣାଣର ଗାୟକ ହେଉଛନ୍ତି ଆମର ପ୍ରଖ୍ୟାତ କଣ୍ଠଶିଳ୍ପୀ ବାଳକୃଷ୍ଣ ଦାଶ ।

ବାଳକୃଷ୍ଣଙ୍କ କଣ୍ଠରେ ଭିନ୍ନ ସ୍ୱାଦର ସନ୍ଧାନ ମିଳେ । ତାଙ୍କର ସଙ୍ଗୀତ ପରିବେଷଣର ଧାରା ଏକାନ୍ତ ଭାବରେ ନିଜସ୍ୱ । ତାଙ୍କ କଣ୍ଠ ମାଧୁରୀ ଭାବ ପ୍ରବଣ ଶ୍ରୋତାକୁ ସମ୍ପୂର୍ଣ୍ଣ ନୂତନ ଜଗତର ସନ୍ଧାନ ଦେଇଥାଏ । ରେଡ଼ିଓରେ 'ଅକାମନ ଚୂଲ ଯିବା' ବାଜି ଉଠିଲେ, ଆବାଳ ବୃଦ୍ଧ ବନିତା ମୋହ ମୁଗ୍ଧ ହୋଇ ସେହି ପଦର ପୁନରାବୃତ୍ତି କରିବାକୁ ଭୁଲନ୍ତି ନାହିଁ । ତା ଶୁଣି-ଶ୍ରୋତାର ନୟନ ଯୁଗଳରୁ ମନ୍ଦ ଶ୍ରାବଣ ପରି ଲୋତକ ଧାର ଝରିଯାଏ । ଶିଶୁ କରତାଳି ଦେଇ ନାଚିବା ଆରମ୍ଭ କରିଦିଏ । ମୋଟ ଉପରେ; ବାଳକୃଷ୍ଣ ବାବୁଙ୍କ ସ୍ୱରଝଙ୍କାର ମନ୍ତ୍ର ଓଡ଼ିଶାର ବିଦଗ୍ଧ ଶ୍ରୋତା- ମଣ୍ଡଳିକୁ ମୋହ ମୁଗ୍ଧ କରିବାରେ ସକ୍ଷମ ହୋଇଥାଏ । ଏହାହିଁ ବାଳକୃଷ୍ଣ ବାବୁଙ୍କ ସାଧନା ଓ ସିଦ୍ଧିର ନିଦର୍ଶନ ।

ବାଳକୃଷ୍ଣବାବୁଙ୍କ କଲିକତା ରହଣି କାଳ ମଧ୍ୟରେ ଥରେ ଫକୀରମୋହନ କଲେଜ, ବାଲେଶ୍ୱରକୁ ସେ ନିମନ୍ତ୍ରଣ ପାଇ ଆସିଥିଲେ । ସେ କଲେଜ ତରଫରୁ ଆୟୋଜିତ ସ୍ୱତନ୍ତ୍ର ସଙ୍ଗୀତ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରି ଶ୍ରୋତା ମଣ୍ଡଳୀକୁ ବିମୁଗ୍ଧ କରିବା ସଙ୍ଗେ ସଙ୍ଗେ, କଲେଜ କର୍ତ୍ତୃପକ୍ଷଙ୍କ ନିକଟରୁ ସମ୍ମାନସୂଚକ 'ସଙ୍ଗୀତ ! ସୁଧାକର' ପଦ ଲାଭ କରିଥିଲେ । ଡକ୍ଟର କାଳିଦାସ ନାଗ ତାଙ୍କୁ ଏହି ପଦବୀରେ ଭୂଷିତ କରିଥିଲେ । ଡକ୍ଟର କାଳିଦାସ ନାଗଙ୍କ ପ୍ରଦତ୍ତ 'ସଙ୍ଗୀତ ! ସୁଧାକର' ଉପାଧି ସେ ଅପାତ୍ରରେ ଦାନ କରିଯାଇ ନାହିଁ, ଓଡ଼ିଶାର ଅନ୍ୟତମ ପ୍ରତିଷ୍ଠିତ ତଥା ପ୍ରତିଭାବାନ୍ କଣ୍ଠଶିଳ୍ପୀ ଶ୍ରୀଯୁକ୍ତ ବାଳକୃଷ୍ଣ ଦାସଙ୍କ ଅଭୂତ- ପୂର୍ବ ପାରଦର୍ଶିତା ଓ ପ୍ରଶଂସନୀୟ କାର୍ଯ୍ୟକଳାପ ତାକୁ ସାବ୍ୟସ୍ତ କରୁଛି ।

କେବଳ କଟକ, କଲିକତା ନୁହେଁ, ଆକାଶବାଣୀର ଜୋନ୍ ପ୍ରୋଗ୍ରାମ୍‌ର ମନୋନୀତ ହୋଇ ସେ ଦିଲ୍ଲୀ, ଜଳନ୍ଧର ଓ ଏଲାହାବାଦ ପ୍ରଭୃତି ସ୍ଥାନକୁ ଯାଇ ଓଡ଼ିଶୀ ଓ ଶାସ୍ତ୍ରୀୟ ସଙ୍ଗୀତ ପରିବେଷଣ ପୂର୍ବକ ବିପୁଳ ଖ୍ୟାତି ଲାଭ କରିଅଛନ୍ତି ।

ପୁଣି ନିଜ ଉଦ୍ୟମରେ ସେ ମାନ୍ଦ୍ରାଜ, ବମ୍ବେ ଓ ପୁନା ନଗରୀରେ ସଙ୍ଗୀତ ଆସରର ଆୟୋଜନମାନ କରି ଓଡ଼ିଶାର ଟେକ ଗୌରବ ବଜାୟ ରଖି ପାରିଛନ୍ତି ।

ଓଡ଼ିଶା ବାହାରେ ଯେଉଁମାନଙ୍କ ଦ୍ୱାରା ପରିଚାଳିତ ହେଉଥିବା ଓ ଓଡ଼ିଆ ସଂସ୍କୃତି ଓ କଳା ପରମ୍ପରାକୁ ଦେଶ ବାହାରେ ପ୍ରଚାର ଓ ପ୍ରସାର କରିବା ଉଦ୍ୟମକୁ ଅବ୍ୟାହତ ରଖିଥିବା ବଙ୍ଗୀୟ ସଂସ୍ଥାର ଅନୁଷ୍ଠାନର କର୍ମକର୍ତ୍ତାମାନେ ବାଳକୃଷ୍ଣବାବୁଙ୍କ କଳା ନୈପୁଣ୍ୟର ପରିଚୟ ଲାଭ କରି ତାଙ୍କୁ ବହୁତ ସମ୍ମାନରେ କଲିକତା, ମାନ୍ଦ୍ରାଜ ପ୍ରଭୃତିରୁ ନିମନ୍ତ୍ରଣ କରି ନେଇ ଯାଇଥାନ୍ତି । ସବୁ କ୍ଷେତ୍ରରେ ଦେଖାଯାଏ, ବାଳକୃଷ୍ଣଙ୍କ ଉଚ୍ଛ୍ୱସିତ ପ୍ରଶଂସା । ଘନ ଘନ କରତାଳିରେ ରଙ୍ଗମଞ୍ଚ ପ୍ରକମ୍ପିତ ହୁଏ । ବାଳକୃଷ୍ଣବାବୁଙ୍କ ପ୍ରୋଗ୍ରାମ୍ ଥିବାର ଶୁଣିଲେ, ତାଂକର ଗୁଣ ମୁଗ୍ଧ ଶ୍ରୋତା ମଣ୍ଡଳୀ ଟିକେଟ ପାଇଁ ଆଖି ବନ୍ଦ କରି ସାମନା ଧାଡ଼ିରେ ବସିବାକୁ ଆଗ୍ରହ ପ୍ରକାଶ କରିଥାନ୍ତି ।

ଏଇ ହେଲା ସଙ୍ଗୀତ ସୁଧାକର ଶ୍ରୀ ବାଳକୃଷ୍ଣ ଦାଶଙ୍କ ସଂକ୍ଷିପ୍ତ ପରିଚୟ । ସେ ବର୍ତ୍ତମାନ ୪୪ ବର୍ଷ ବୟସର ପ୍ରୌଢ଼ । ତଥାପି ସ୍ୱାସ୍ଥ୍ୟ ଅତୁଟ ରହିଛି । ବାଳ ପାଚିନାହିଁ । ଦମ୍ଭିଲା ଦମ୍ଭିଲା ପାଦ ।

ସେ ବର୍ତ୍ତମାନ ଭୁବନେଶ୍ୱରସ୍ଥ ଉତ୍କଳ ସଙ୍ଗୀତ ମହାବିଦ୍ୟାଳୟର ଓଡ଼ିଶୀ ବିଭାଗର ଅଧ୍ୟାପକ ।

ଶ୍ରୀଯୁକ୍ତ ବାଳକୃଷ୍ଣ ଦାଶ ଭୁବନେଶ୍ୱର ଗୃହନିର୍ମାଣ ୟୁନିଟ୍‌ର ଏକ ଭଡ଼ା ଘରେ ସପରିବାର ବାସ କରୁଛନ୍ତି । ନିଃସନ୍ତାନ ହେତୁ ସାନଭାଇଙ୍କ ପୁଅକୁ ପୋଷ୍ୟ ପୁତ୍ର କରିଛନ୍ତି । କେବଳ ବାଳକୃଷ୍ଣବାବୁ ନୁହନ୍ତି, ତାଙ୍କ ପରିବାରର ସମସ୍ତେ ଅତିଥି ପରାୟଣ । ସେଦିନ କଥାବାର୍ତ୍ତା ଶେଷ ହେଉ ହେଉ ସାଢ଼େ ଏଗାରଟା ବାଜି ଯାଇଥିଲା । ତେଣେ ଭାତଥାଳୀ ବଢ଼ା ଯାଇଥାଏ ତ ଏଣେ ମୋର ପ୍ରଶ୍ନ-ପର୍ବ ମହଜୁଦ୍ ଥାଏ । ଅତି

ସ୍ୱପକ୍ଷରେ ସେ ସବୁ କଥା ସ୍ପଷ୍ଟ ଭାବରେ ପ୍ରକାଶ କରି ଯାଉଥାନ୍ତି । ପ୍ରଶ୍ନକଲି, ଆଧୁନିକ ସଙ୍ଗୀତ ସମ୍ପର୍କରେ ଆପଣଙ୍କ ମତାମତ କଅଣ ?

ଦେଖିଲି, ମୁହଁର ମସ ଧାରକ ମଠାରୁ ଖସି ଯାଉଛି । କହିଲେ, ଏ ପ୍ରଶ୍ନ ନ ଚଳେଇ ଥିଲେ କଣ ଚଳି ନ ଥାନ୍ତା ?

ଚିଥାଶି ମୁଁ ନୀରବ ରହିଲି ।

ବାଳକୃଷ୍ଣବାବୁ କହିଲେ, ଆଜିକାଲି ଦୁନିଆରେ ଯାହାକୁ ଆଧୁନିକ ସଙ୍ଗୀତ କୁହାଯାଉଛି ତାହାର କିଛି ମୂଲ୍ୟ ନାହିଁ । 'ଖାଲି 'ପପ୍‌ସଙ୍ଗ୍' ବା ଶସ୍ତା ସଙ୍ଗୀତ ।

କଳାକାରମାନେ ନିଜକୁ ଜାହିର କରି ପ୍ରକୃତ କଳାକାର ଆତ୍ମ-ପ୍ରକାଶ କରୁଛନ୍ତି । ସଙ୍ଗୀତ ସାଧନାର ନାଁ ଗନ୍ଧ ନାହିଁ । ଖାଲି ବାହାବୁଲି ପାଇବା ନିଶା । ଏ ନିଶା ଗାୟକ ଓ ଶ୍ରୋତା ଉଭୟଙ୍କୁ ଘାରିଛି । ଏସବୁ ବନ୍ଦ ହେବା ଆବଶ୍ୟକ । ଆଧୁନିକ ସଙ୍ଗୀତକୁ ଲାଇନ୍‌ରେ ପକାଇବା ଉଚିତ । ତା ନ ହେଲେ ଏହାର ଭବିଷ୍ୟତ ଅନ୍ଧକାରମୟ ହେବ ।

କିନ୍ତୁ ଲାଇନ୍‌ରେ ପକାଇବ କିଏ ? ମୁଁ ପ୍ରଶ୍ନ କଲି । ପୁଣି ସଂଯୋଗ କଲି, ଲାଇନ୍‌ରେ ଥିବା ଲୋକମାନେ ହିଁ ଏଥିପାଇଁ ଚେଷ୍ଟା କରିବା ଆବଶ୍ୟକ ।

ସେ ମୋ କଥାରେ ରାଜି ହେଲେ ସତ କିନ୍ତୁ ନୀରବ ରହିଲେ ।

# ଭାରତୀଭୂଷଣ ସତ୍ୟନାରାୟଣ

**ଅଧ୍ୟାପକ ଶିବରାମ ପାଣ୍ଡେ**

"ଧନ ଅର୍ଜନ, କେବଳ ତାଙ୍କର କାମ୍ୟ ହୋଇନାହିଁ । କୌଣସି ମତେ କୃତ୍ୟ ଦେଖାଇ ପାରିଲେ ସେ ଖୁସି । ଯଶ ଲିପ୍ସା ମଧ୍ୟ ତାଙ୍କର ନାହିଁ । କର୍ମଯୋଗୀ ସେ । ତେଣୁ ଛାତ୍ରମଣ୍ଡଳରେ ଥିଲାବେଳେ ସେ ଜ୍ଞାନର ତପସ୍ୱୀ ପରି ଦିଶନ୍ତି । ଅଧ୍ୟୟନ ଓ ଗବେଷଣା ଟେବୁଲ ପାଖକୁ ନ ଆସି ସେ ଦିନେ ସ୍ଥିର ରହି ପାରନ୍ତି ନାହିଁ । ବିଦ୍ୟା ତାଙ୍କର ସାମୟିକ ବିନୋଦନ ନୁହେଁ । ଏକ ବଦାନ୍ୟ ଗୁଣ । ଅବଗାହନରେ ନୁହେଁ, ଆକଣ୍ଠ ନିମଗ୍ନ ହେବାରେ ହିଁ ପରମ ତୃପ୍ତି ଓ ଶାନ୍ତି ପାଇଥାନ୍ତି । ବିନୟ ତାଙ୍କର ଏକ ଭଦ୍ରଲୋକ ଜନିତ କିମ୍ବା ସୌଜନ୍ୟ ଆଚରଣ ମାତ୍ର ନୁହେଁ । ଏହି ବୈଦଗ୍ଧ୍ୟଜାତ ଏକ ସ୍ୱାଭାବିକ ସଦ୍‌ଗୁଣ । ଚୈତ୍ରର ସ୍ୱତଃସ୍ଫୂର୍ତ୍ତି ଚଇତାଳି ପରି ଏହା ପ୍ରାକୃତିକ ବୋଧହୁଏ ।"

—ଡ଼ଃ କୁଞ୍ଜବିହାରୀ ଦାଶ *

ଓଡ଼ିଶାର ସାରସ୍ୱତ ଜଗତରେ କ୍ୱଚିତ ସାଧକଙ୍କ ଆବିର୍ଭାବ ଘଟିଛି ଯେଉଁମାନଙ୍କ ଜୀବନ, ଜୀବନଚର୍ଯ୍ୟା ଓ ଜୀବନାଦର୍ଶ ଆକର୍ଷଣୀୟ ଓ ପ୍ରେରଣା ଦାୟକ । ଏହି ବରିଷ୍ଠ ବ୍ୟକ୍ତିତ୍ୱ ସମ୍ପନ୍ନ ସାଧକଙ୍କ ସମ୍ପର୍କରେ ଆଲୋଚନା କଲାବେଳେ ମନ ସ୍ୱତଃ ସଙ୍କୁଚିତ ହୋଇଯାଉଛି । ଶ୍ରୀ ସତ୍ୟନାରାୟଣ ରାଜଗୁରୁଙ୍କ ଜୀବନ ସହିତ ଅର୍ଦ୍ଧଶତାବ୍ଦୀ କାଳର

* ସତ୍ୟନାରାୟଣ ରାଜଗୁରୁ—'ନବପତ୍ର' ଅକ୍ଟୋବର ୧୯୭୧ ।

ଓଡ଼ିଶାର ରାଜନୈତିକ ଓ ସାଂସ୍କୃତିକ ଘଟଣାବଳୀ ଓତଃପ୍ରୋତ ଭାବେ ଜଡ଼ିତ ।

ସତ୍ୟନାରାୟଣ ରାଜଗୁରୁଙ୍କର ଜନ୍ମ ଓଡ଼ିଶାର ଜାତୀୟତାର ପ୍ରାଣକେନ୍ଦ୍ର, ପାରଳାଖେମୁଣ୍ଡିର ବିଖ୍ୟାତ ରାଜଗୁରୁ ପରିବାରରେ ଯେଉଁ, ପରିବାରରେ ସୁ-ପ୍ରସିଦ୍ଧ ପଣ୍ଡିତ ମଧୁସୂଦନ ରାଜଗୁରୁ ଓ ଓଡ଼ିଆ ସାହିତ୍ୟର ଆଦି ଛନ୍ଦ, ସାହିତ୍ୟ ସମାଲୋଚକ ଶ୍ୟାମସୁନ୍ଦର ରାଜଗୁରୁ ଜନ୍ମ ଗ୍ରହଣ କରିଥିଲେ । ସେ ନିଜ "ଆତ୍ମଜୀବନୀ"ରେ ଲେଖିଛନ୍ତି :—

"ମଧୁସୂଦନଙ୍କର ଜ୍ୟେଷ୍ଠପୁତ୍ର ହରେକୃଷ୍ଣ ରାଜଗୁରୁ ମୋର ପିତା । ଯୌବନ ସମୟରେ ସେ ରାଜା ଗୌରଚନ୍ଦ୍ର ଗଜପତିଙ୍କର ସହଯୋଗୀ ଓ ସହକର୍ମୀ ରୂପେ ରହିଥାନ୍ତି । ଗୌରଚନ୍ଦ୍ର ଦେବ ଜଣେ ଉଚ୍ଚକୋଟୀର ଶିକାରୀ ଥିଲେ । ଏଥିପାଇଁ ସେ ବହୁସମୟ ରାଜପ୍ରାସାଦରେ ରହୁଥିବାରୁ ମଧୁସୂଦନଙ୍କର ଅପ୍ରିୟ ହୋଇଥିଲେ । କାରଣ ବୈଷ୍ଣବ ପଣ୍ଡିତ ମଧୁସୂଦନ ଇଚ୍ଛା କରୁଥିଲେ ଯେ ତାଙ୍କର ପୁତ୍ର ତାଙ୍କପରି ପଣ୍ଡିତ ଓ ଧର୍ମଶୀଳ ହେବା ଆବଶ୍ୟକ । କ୍ଷତ୍ରିୟ ଜାତିପରି ବ୍ୟାଧକର୍ମ ବ୍ରାହ୍ମଣର କର୍ତ୍ତବ୍ୟର ନୁହେଁ । ଏଣୁ ମଧୁସୂଦନଙ୍କର ଉପସ୍ଥିତିରେ ମୋର ପିତା ଘରକୁ ପ୍ରାୟ ଆସୁ ନଥିଲେ । ଶ୍ୟାମସୁନ୍ଦର ରାଜଗୁରୁ ଓ ମୋର ପିତାଙ୍କ ମଧ୍ୟରେ ଯଥେଷ୍ଟ ସ୍ନେହ ସୌହାର୍ଦ୍ଦ୍ୟ ରହିଥିଲା । ମୋର ମା' ସୁନାମଣି ଦେବୀ ତତ୍କାଳୀନ ରୀତି ଅନୁସାରେ ହାଣ୍ଡିଶାଳରେ ଆବଦ୍ଧ ହୋଇ ଶାଶୁ ଶ୍ୱଶୁରଙ୍କର ଚର୍ଚ୍ଚାରେ ଆତ୍ମନିୟୋଗ କରିଥାନ୍ତି । ବହୁକାଳ ପର୍ଯ୍ୟନ୍ତ ତାଙ୍କର ପୁତ୍ର ସନ୍ତାନ ନହେବାରୁ ଶାଶୁଶ୍ୱଶୁରଙ୍କର ମନରେ ଘୋରଚିନ୍ତା । ଦିନେ ଆମର କୁଳ ପୁରୋହିତ ନାରାୟଣ କର ଓ ଜେଜେବାପା ମଧୁସୂଦନଙ୍କର ପାଖକୁ ଆସି କହିଲେ—'ଆଜ୍ଞା, ଆପଣଙ୍କୁ ମୁଁ ଉପଦେଶ ଦେବାଭଳି ସମର୍ଥ ନୁହେଁ, କିନ୍ତୁ ମୁଁ ଜାଣେ ସତ୍ୟନାରାୟଣ ମହାପ୍ରଭୁଙ୍କ ନିୟମିତ ଆରାଧନା କଲେ ନିଶ୍ଚୟ ପୁତ୍ର ସନ୍ତାନ ପ୍ରାପ୍ତି ହେବ ।' ପୁରୋହିତ କଥାରେ ମଧୁସୂଦନ ସ୍ୱୀକୃତ ହୋଇ ସତ୍ୟନାରାୟଣ ବ୍ରତ ବିଧିପୂର୍ବକ ହୋମ ସହିତ ଆରମ୍ଭ କଲେ । କଥିତ ଅଛି ଯେ ଏଥିରେ ଅଳ୍ପ କାଳପରେ

ମୁଁ ମାତୃଗର୍ଭରେ ରହିଥିଲି । ମୋର ଜନ୍ମ ୧୯୦୩ ମସିହା ଭାଦ୍ରପଦ କୃଷ୍ଣ ଏକାଦଶୀ ବୁଧବାର ସେପ୍ଟେମ୍ବର ୯ ତାରିଖରେ । ସେଦିନ ଆମ ଗୃହରେ କି ଆନନ୍ଦ ଉତ୍ସବ ! କିନ୍ତୁ ଏହାର ସାତଦିନ ପରେ ମୋର ମାଙ୍କର ଅକାଳ ବିୟୋଗ ସେହି ଆନନ୍ଦକୁ ନିରାନନ୍ଦରେ ପରିଣତ କଲା । ମୁଁ ମାତୃହୀନ ହେଲି କିନ୍ତୁ ମୋର ପିତାମହୀ ଏବଂ ତାଙ୍କର ବିଧବା କନ୍ୟା ବିମଳାଙ୍କର ଯତ୍ନରେ ମୋର ଶୈଶବକାଳ ନିରାପଦରେ ଅତିବାହିତ ହେଲା । ଗୋଟିଏ ଶୁଦ୍ରଧାତ୍ରୀ ମୋତେ ନିତ୍ୟନିୟମିତ ପ୍ରକାରରେ କ୍ଷୀରପାନ କରାଇଲେ ।" *

ଜନ୍ମର ସପ୍ତାହକ ପରେ ହିଁ ଶ୍ରୀ ରାଜଗୁରୁଙ୍କ ମାତା ସୁନାମଣି ଦେବୀଙ୍କ ବିୟୋଗ ଫଳରେ ବାଲ୍ୟାବସ୍ଥାରୁ ହିଁ ତାଙ୍କର ସ୍ୱଭାବ 'ଗମ୍ଭୀର ଓ ଉଦାସୀନ' ହୋଇଯାଏ । ଏଇ ଅବସରରେ ଉତ୍କଳମାତାଙ୍କ ବରପୁତ୍ର ବ୍ୟାସକବି ଫକୀରମୋହନ ସେନାପତି ଓ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ଜୀବନ କଥା ସ୍ୱତଃସ୍ଫୂର୍ତ୍ତ ମନକୁ ଆସିଯାଏ । ବିଧିର ବିଧାନ ବିଚିତ୍ର ! ପ୍ରତିଭାର ପରୀକ୍ଷା ଆରମ୍ଭରୁ ହିଁ ଶତ ପ୍ରତିବନ୍ଧକର କଷଟିରେ ପରୀକ୍ଷିତ ହୋଇଥାଏ ।

ଶ୍ରୀ ରାଜଗୁରୁଙ୍କ ଜୀବନ ଆଦ୍ୟରୁ ହିଁ ବୈଚିତ୍ର୍ୟ—ବିମଣ୍ଡିତ । ତାଙ୍କ 'ଆତ୍ମଜୀବନୀ'ରୁ କିୟଦଂଶ ଉଦ୍ଧାର କରାଗଲା—"ମନୁଷ୍ୟ ଜୀବନରେ ଯେଉଁ ଉତ୍ଥାନ ପତନର ବିପଦ ସମ୍ପଦର ଲୀଳା ଚାଲିଛି ସେଥିରୁ ମୋର ଧାରଣା ହୁଏ ଯେ କୌଣସି ଅଜ୍ଞାତ ଶକ୍ତିର ଗୋଟିଏ ଶୃଙ୍ଖଳିତ ନୀତିରେ ତାହା ନିୟନ୍ତ୍ରିତ ହୋଇଥାଏ ।

ଦିନକର ଘଟଣା ସେତେବେଳେ ମୋର ବୟସ ମାତ୍ର ୧୦ ମାସ । ଆମ ଗୃହର ପଛଭାଗର ଗୋଟିଏ ବିରାଟ ଅଗଣାକୁ ଲାଗିଥିବା ବାରଣ୍ଡାରେ ମୋତେ କୋଳରେ ଧରି ମୋର ପ୍ରପିତାମହୀ ବୁଢ଼ୀ ନାଆଁରେ

* ଶ୍ରୀ ରାଜଗୁରୁଙ୍କ ଆତ୍ମଜୀବନୀର ପ୍ରଥମ ଭାଗର ଲେଖା ସରିଛି । ଉଦ୍ଧୃତାଂଶ ଉକ୍ତ ପାଣ୍ଡୁଲିପିରୁ ସଂଗୃହୀତ ।

ଦେଖା ଦେଉଥିଲେ ଓ ତେଲ ଲଗାଇ ଦେଉଥିଲେ । ସେତିକବେଳେ ବାଡ଼ ପଟଆଡ଼ୁ ସକାଳୁ ଲୁଚିଥିବା ଗୋଟିଏ ମଣିଷଖିଆ ଚିତାବାଘ ଘରି ଅଗଣା ଭିତରକୁ ଗୋଟିଏ ବାନ୍ଧୁଣୀ ପଟରେ ଆମି ମୋର ଓ ବୁଢ଼ୀଙ୍କର ମୁଣ୍ଡ ଉପର ଦେଇ ଡେଇଁ ବାନ୍ଧୁଣୀକୁ ଧରିବା ଉଦ୍ଦେଶ୍ୟରେ ପଳାଇଲା ।

ମୋର ପିତୃଦେବ ଗୋପୀନାଥ ହଜଗୁରୁ ଯେତେବେଳେ ସେହି ଅଗଣାରେ ଥିବା ଗୋଟିଏ କଳସି ବୁଦାରୁ ଫୁଲ ତୋଳୁଥାନ୍ତି । ବାଘକୁ ଦେଖି ସେ ପାଟିକଲେ । ହଠାତ୍ ଉପରେ ଥିବା କୋଠରୀ ଭିତରେ ମୋତେ ଧରି ବୁଢ଼ୀମା ଲୁଚି ରହିଲେ । ସେଆଡ଼ୁ ଦ୍ୱାର ଗୁଡ଼ିକ ବନ୍ଦ କରି ଦିଆଗଲା । ବାଘ ଆମ ଘରେ ପଶ୍ଚିମ ପଟ ବାଡ଼ିରୁ ଆସି ପୂର୍ବ ଆଡ଼ ବାଡ଼ ଭିତରେ ବାଛୁରିକୁ ଖୋଜି ଖୋଜି ଗୋଟିଏ ବଡ଼ି କୋଠରୀ ଭିତରେ ପଶି ବେଶ୍ ଆରାମରେ ଶୋଇରହିଲା । ସେତିକବେଳେ ରଣା ବେହେରା ନାମକ ଘରର ଗୌଡ଼ ଚାକର ବାଘଥିବା କୋଠରୀ ଭିତରକୁ ଉଙ୍କି ମାରି ଗୁହାଁଳକ୍ଷଣି ବାଘ ଗର୍ଜନ କରି ତା ଉପରକୁ ମାଡ଼ି ଆସିଲା । ସମସ୍ତେ ଅସ୍ତବ୍ୟସ୍ତ ହୋଇ ଯେ ଯେଉଁଠାରେ ପାରିଲେ କବାଟ ଆଡ଼େଇ ଦ୍ୱାରବନ୍ଦ କରିଦେଇ ଓ ବାଘ ମଣିଷ ଭିତରେ ଲଢ଼େଇ ଗର୍ଜନ ଶୁଣିବାକୁ ଲାଗିଲେ । ରଣା ଜଣେ ବଳିଷ୍ଠ ଜୁଆନ । ଯଥାସାଧ୍ୟ ସେ ଆତ୍ମରକ୍ଷା କରିବାକୁ ଦୁଇ ହାତରେ ନିଜର ବେକଟି ଘୋଡ଼ାଇ ରଖିଛି । ବାଘ ତା' ଉପରେ ମାଡ଼ିବସି ଦେହସାରା ବିଦାର୍ଣ୍ଣ କରି ଗଲଣି ।

ସେତିକବେଳେ ମୋର କକେଇ ଗୋଟିଏ ଝରକା ଖୋଲିଦେଇ ଘଣ୍ଟା ବଜାଇବାରୁ ବାଘ ସେ ଶବ୍ଦରେ ଝରକା ଆଡ଼କୁ ଚମକି ଆସିଲା । ସମୟ ଦେଖି ଅଳ୍ପକଷ୍ଟରେ ରଣା ସେଠାରୁ ବାଡ଼ କାନ୍ଥ ଡେଇଁ ବାହାରକୁ ପଳାଇ ଆସିଲା । ପରେ ବହୁଦିନ ହସ୍ପିଟାଲରେ ଚିକିତ୍ସିତ ହୋଇ ସେ ଭଲ ହୋଇଥିଲା । ମହାରାଜା ଗୌରଚନ୍ଦ୍ର ଦେବଙ୍କୁ ଖବର ଗଲା । ସଙ୍ଗେ ସଙ୍ଗେ ସେ ଘୋଡ଼ାଗାଡ଼ିରେ ବସି ଘରଠାକୁ ଆସି ଦେଖିଲେ ବାଘ ପୁଣି ସେଇ କୋଠରୀ ଭିତରେ ପଶି ଝରକା ଆଡ଼କୁ ମୁହଁ କରି ଆରାମରେ ଶୋଇଛି । ସୁ-ବିଖ୍ୟାତ ଶିକାରୀ ଗଜପତି ମହାରାଜା ତାଙ୍କୁ

ସେଇଠାରେ ବନ୍ଧୁକରେ ମାରିଥିଲେ "ଯେଉଁ ମଣିଢିଆ ଚିତାବାଘ ମୋର ମୁଣ୍ଡଦେଇ ଡେଇଁ ପଳାଇଲା ସେ ତ ଅନାୟାସରେ ମୋର ବୁଢୀମା' ସଙ୍ଗେ ମୋତେ ଚର୍ଭସାତ କରି ପାରିଥାନ୍ତା । କିନ୍ତୁ ସେପରି ସେ କଲା ନାହିଁ କାହିଁକି ? ଏହା କ'ଣ ସେହି ଦୈବୀ ଶକ୍ତିର ଯୋଜନାର ପରିଣାମ ନୁହେଁ ?

ଦୈବୀ ଆଶୀର୍ବାଦରେ ହିଁ ଏଇ ବ୍ୟକ୍ତିତ୍ୱ ପରିପାଳିତ ଓ ପରିପୁଷ୍ଟ ହୋଇଛି । ଏହାର ପ୍ରମାଣ ତାଙ୍କ ଘଟଣାମୟ ଜୀବନର ବିଭିନ୍ନ ପର୍ଯ୍ୟାୟରୁ ଆମେ ଲକ୍ଷ୍ୟ କରୁଁ । ନବ ଉତ୍କଳର ନିର୍ମାତା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି-ଦେବଙ୍କ ସହକର୍ମୀ ଭାବେ ସ୍ୱତନ୍ତ୍ର ଓଡ଼ିଶା ଆନ୍ଦୋଳନ କାର୍ଯ୍ୟରେ ସେ ସକ୍ରିୟ ଅଂଶ ଗ୍ରହଣ କରିଥାନ୍ତି । ଥରେ (୧୯୩୨ରେ) ସେ ଏକ ଭୟଙ୍କର ବିପଦର ସମ୍ମୁଖୀନ ହୋଇଥିଲେ ଏବଂ ଅତି ଅଳ୍ପକରେ ମୃତ୍ୟୁ ମୁଖରୁ ରକ୍ଷା ପାଇଥିଲେ । ସେ କଥା ତାଙ୍କ ଭାଷାରେ କହିଲେ---"ଜାନୁୟାରୀ ୧୧ ତାରିଖ ୧୯୩୨ ସାଲରେ ଗୋଟିଏ ଟେଲିଗ୍ରାମ ପାଇ ଦେଓ୍ୱାନ ଅନନ୍ତରା-ରଥ ମୋତେ, ଶ୍ୟାମ ସୁନ୍ଦର ଗନ୍ତାୟତଙ୍କୁ ଓ ହୀରାଲାଲ ବର୍ଦ୍ଧନଙ୍କୁ ଡାକି କହିଲେ ଯେ—ଆଜ ରାତି ୧୦ଟାବେଳେ ଏଠାରୁ ତୁମେ Rolls Roys ବସି କଟକ ଯିବାକୁ ଟେଲିଗ୍ରାମ ଦେଇଛନ୍ତି । ତେଣୁ ତୁମେ ପ୍ରସ୍ତୁତ ହୋଇ ଆସ ଓ ମହାରାଜାଙ୍କ ସାକ୍ଷ୍ୟ ପାଇଁ ଯାହା ସବୁ କାଗଜ ପତ୍ର ଓ ବହି ଗୁଡ଼ିକ ନେବା ଆବଶ୍ୟକ, ତାହା ସାଙ୍ଗରେ ଧରିଥାଅ । ସେଦିନ ରାତିରେ ଠିକ୍ ୧୦ଟା ବେଳେ ଆମେ ବାହାରିଲୁ । ଭୀଷଣ ଶୀତ ଦିନିଆ ରାତି । ହଠାତ୍ ତୁଷାର ପାତ ଫଳରେ ଡ୍ରାଇଭର ରାସ୍ତା ଜାଣି ନ ପାରି ଗାଡ଼ିରେ ବ୍ରେକ୍ ଦେଲେ । ଯେତେବେଳେ ତାହା ରାସ୍ତାରେ ଘୋଷାରି ହୋଇ ପ୍ରାୟ ୧୦।୧୨ ହାତ ଆଗକୁ ଚାଲି ଯାଇଥାଏ । ଆମେ ଆଗକୁ ଝୁଙ୍କି ହୋଇ ପଡ଼ିଲୁ । ତଳକୁ ଓହ୍ଲାଇ ଦେଖିଲୁ ଯେ ଗୋଟିଏ ପାହାଡ଼ ଉପରେ ସଙ୍କୀର୍ଣ୍ଣ ରାସ୍ତାର ଠିକ୍ ଶେଷକୁ ଲାଗି ଗାଡ଼ି ଅଟକି ରହିଛି । ଆଉ ହାତେ ଆଗକୁ ଗଲେ ପାହାଡ଼ ତଳକୁ କେତେ ଶହ ଫୁଟ ତଳେ ଓଲଟି ପଡ଼ନ୍ତା । ଈଶ୍ୱରଙ୍କୁ ଧନ୍ୟବାଦ ଦେଇ ଆମେ ଯେତେବେଳେ ଗାଡ଼ି ଭିତରେ ଆସି ବସିଲୁ ଅଧ୍ୟାପକ ବର୍ଦ୍ଧନ କହିଲେ, ଆମର ଦେଶ ମିଶ୍ରଣ କାର୍ଯ୍ୟ ନିଶ୍ଚୟ ଫଳବତୀ

ନେବ । ତା' ନ ହେଲେ ଆଜି ଏହିଠାରେ ସମସ୍ତେ ଆଜି ପ୍ରାଣ ହରାଇଥାନ୍ତେ ।" *

ଏହି କ୍ଷୀଣ ଶରୀରଧାରୀ ସରଳ, ନିରଳସ, ନିରାଡ଼ମ୍ବର, ମିତଭାଷୀ, ବିନୟୀ, ଈଶ୍ୱରବାଦୀ ଧୈର୍ଯ୍ୟବାନ ଓ ପ୍ରତିଭାବାନ ପୁରୁଷଙ୍କୁ ଜୀବନସାରା ରୋଗ ବ୍ୟାଧି ଦୈବ ଦୁର୍ବିପାକର ସମ୍ମୁଖୀନ ହେବାକୁ ପଡ଼ିଛି ।

ଶ୍ରୀଯୁକ୍ତ ରାଜଗୁରୁଙ୍କର ବିଦ୍ୟାରମ୍ଭ ୫ ବର୍ଷ ବୟସରେ ଆରମ୍ଭ ହୋଇଥିଲା । ସେ ବିଧବା ପିଉସୀ ନାମାଙ୍କଠାରୁ ପ୍ରତିଦିନ ରାମାୟଣ ମହାଭାରତ ଶୁଣି ପୁରାଣ ପ୍ରତି ଆକୃଷ୍ଟ ହୋଇ ଯାଇଥିଲେ ଏବଂ ପରେ ଘରେ ଜେଜେମା ଓ ପିଉସୀଙ୍କ ପାଇଁ ନିୟମିତ ପୁରାଣ ପାଠ କରି ସେତେବେଳେ ପ୍ରକାଶିତ ସମସ୍ତ ଓଡ଼ିଆ ପୁରାଣ ପାଠ କରିଥିଲେ । ତାଙ୍କର କଣ୍ଠସ୍ୱର ଅତି ମଧୁର ଥିଲା । ଏହି ପୁରାଣ ଶ୍ରବଣ ଓ ପଠନରୁ ହିଁ ରାଜଗୁରୁ-ପ୍ରତିଭାର ଉତ୍ତରଣ ପ୍ରକ୍ରିୟା ଆରମ୍ଭ ହୋଇଛି ।

ପିତାମହ ମଧୁସୂଦନ ଉତ୍କଳର ସର୍ବମାନ୍ୟ ପଣ୍ଡିତ ଓ ବୈଷ୍ଣବ ଧର୍ମାବଲମ୍ବୀ ଭକ୍ତ । ତାଙ୍କର ସ୍ମରଣଶକ୍ତି ଅତି ପ୍ରଖର । ଧର୍ମଶାସ୍ତ୍ର, ସଂସ୍କୃତ ସାହିତ୍ୟ, ବ୍ୟାକରଣ ତତ୍ତ୍ୱଦର୍ଶନ, ଜ୍ୟୋତିଷ, କର୍ମକାଣ୍ଡ ଆୟୁର୍ବେଦ ଶାସ୍ତ୍ରରେ ପାରଦର୍ଶିତା ଅର୍ଜନ କରିଥିଲେ । ବିଦ୍ୟାମୋଦୀ ଉତ୍କଳସର୍ବମାନ୍ୟ ସେହି ପଣ୍ଡିତ ନିଜପୁତ୍ରମାନଙ୍କ ପାଇଁ ଏକ ସଂସ୍କୃତ ଟୋଲ ସ୍ଥାପନ କରିଥିଲେ । କିନ୍ତୁ ବଡ଼ପୁଅ ହରିକୃଷ୍ଣ ରାଜଗୁରୁ (ଶ୍ରୀ ସତ୍ୟନାରାୟଣଙ୍କ ପିତା) ବିଦ୍ୟାର୍ଜନ ପ୍ରତି ଧ୍ୟାନ ନ ଦେଇ ଥିଲେ ଶିକାର ପ୍ରିୟ । ସେ ସର୍ବମାନ୍ୟ ଶିକାରୀ ରାଜା ଗୌରଚନ୍ଦ୍ର ଗଜପତିଙ୍କର ଶିକାରୀ ବନ୍ଧୁ ଥିଲେ । ତେଣୁ ଗୃହରେ ପିତା ପୁତ୍ରଙ୍କ ମଧ୍ୟରେ କ୍ୱଚିତ୍ ସାକ୍ଷାତ ହେଉଥିଲା । କିନ୍ତୁ ଗୃହରେ ଅନ୍ୟମାନଙ୍କ ମଧ୍ୟରେ ମାତାମହୀ ମାଣିକ୍ୟ ଦେବୀ କୃଷ୍ଣ ଭକ୍ତି ପରାୟଣା ଥିଲେ । ଦ୍ୱିତୀୟ କକେଇ ରାଧାଗୋବିନ୍ଦ ରାଜଗୁରୁ ଉଚ୍ଚକୋଟୀର ପଣ୍ଡିତ ଥିଲେ । ଭାଗବତରେ ତାଙ୍କର ଗଭୀର ଜ୍ଞାନ ଥିଲା । ସେ ଗୀତା ଓ ଦେବୀମାହାତ୍ମ୍ୟର

* ଆତ୍ମଜୀବନୀ ପାଣ୍ଡୁଲିପିରୁ ସଂଗୃହୀତ ।

ନିକଟ ଥିଲେ । ବିଖ୍ୟାତ କଣ୍ଠଶିଳ୍ପୀ ଅଟନ୍ନା ପାଣିଗ୍ରାହୀଙ୍କର ସେ ବନ୍ଧୁ ଥିଲେ । ଓଡ଼ିଶାର ଶ୍ରେଷ୍ଠ ଆଦି ସାହିତ୍ୟ ସମାଲୋଚକ ଶ୍ୟାମସୁନ୍ଦର ରାଜଗୁରୁ (ମଧୁସୂଦନ ରାଜଗୁରୁଙ୍କ ଭାଇ) ତାଙ୍କର ପ୍ରିୟ କାଳିଆ ବାପା । ଏମାନଙ୍କ ପ୍ରେରଣାରେ କିଶୋର ସତ୍ୟନାରାୟଣଙ୍କ ବାଲ୍ୟରୁ ବିକାଶ ସମ୍ଭବ ହୋଇଛି ।

ଶ୍ରୀ ରାଜଗୁରୁଙ୍କ ପ୍ରତିଭାର ପ୍ରକାଶ ଭାରତୀୟ ଓ ଉତ୍କଳୀୟ ଜନଜୀବନର ସନ୍ଧିକ୍ଷଣ ସମୟ, ସଂଗ୍ରାମର ସମୟ । ଏକ ଦିଗରେ ଭାରତୀୟ ସ୍ୱାଧୀନତା ସଂଗ୍ରାମ, ଅନ୍ୟଆଡେ ସ୍ୱତନ୍ତ୍ର ଓଡ଼ିଶା ଆନ୍ଦୋଳନ ଉଭୟ ପ୍ରତି ସେ ଆକୃଷ୍ଟ ହୋଇଥିଲେ । ଜାତୀୟ ନେତୃବୃନ୍ଦଙ୍କ ଆହ୍ୱାନରେ ଯୁବ ସମ୍ପ୍ରଦାୟ ବିଶେଷତଃ ଛାତ୍ର ସମାଜ ବିଭିନ୍ନ ସାମାଜିକ, ସାଂସ୍କୃତିକ ରାଜନୈତିକ କର୍ମରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ନାନା ଗଠନମୂଳକ କାର୍ଯ୍ୟରେ ନିୟୋଜିତ ହୋଇଥିଲେ । କିଶୋର ସତ୍ୟନାରାୟଣ ଗୃହର ଚାରିକୋଣ ମଧ୍ୟରେ ବନ୍ଦୀ ରହିଲେ ସେ ଦୁଃଖିତ ଥିଲେ । କିନ୍ତୁ ବାହାର ପୃଥିବୀରେ ସେ ଥିଲେ ଉଦାର, ନିର୍ଭୀକ, କର୍ମଠ ଓ ସୁନ୍ଦରଶୀଳ ଏବଂ ଉଚ୍ଚାଭିଳାଷୀ । ସେ ତତ୍କାଳୀନ ପାରଳାଖେମୁଣ୍ଡିରେ ନିରକ୍ଷରତା ଦୂରୀକରଣ ପାଇଁ ପ୍ରୌଢ଼ ନିରକ୍ଷରମାନଙ୍କୁ ଅକ୍ଷର ଓ ଅଙ୍କ ଶିକ୍ଷା ଦେବାକୁ ସ୍ୱେଚ୍ଛାସେବକ ହିସାବରେ ଆଗେଇ ଆସିଥିଲେ । ଯୁବତୀ ବିବାହ, ଅସବର୍ଣ୍ଣ ବିବାହ, ବିଧବା ବିବାହ ପ୍ରଭୃତି ସାମାଜିକ ଆନ୍ଦୋଳନର ପ୍ରସାର ପାଇଁ ଧ୍ୟାନ ଦେଇଥିଲେ ।

୧୯୨୧ରେ ସେ ଫୋର୍ଥ ଫର୍ମ (ନବମଶ୍ରେଣୀରେ) ପଢ଼ୁଥିଲା-ବେଳେ ମହାତ୍ମାଗାନ୍ଧୀ ପାରଳାଖେମୁଣ୍ଡି ଆସିଥିଲେ । ମହାତ୍ମାଗାନ୍ଧୀଙ୍କ ଆହ୍ୱାନରେ ସ୍କୁଲ ଛାଡ଼ି କଂଗ୍ରେସରେ ଯୋଗ ଦେବାକୁ ସେ ସ୍ଥିର କଲେ । କିନ୍ତୁ ପିତାଙ୍କ ବାରଣ ଓ ଯୁକ୍ତିରେ ସେଥିରୁ ନିବୃତ୍ତ ହୋଇଥିଲେ । କିନ୍ତୁ ନିଜକୁ ଗଢ଼ିବାକୁ ଉତ୍କଳ ମାତାଙ୍କର ସେବାରେ ଅଗ୍ରସର ହେଲେ ।

ଏଥର ସେ ପୂର୍ଣ୍ଣ ଭାବରେ କେବଳ ଉତ୍କଳ ସମ୍ମିଳନୀର କର୍ମରେ ହିଁ ଲାଗିଲେ । People's Associationର କାର୍ଯ୍ୟ କଲେ । ହାଇସ୍କୁଲ

ସ୍ଥିରଙ୍କ 'ଉତ୍କଳ ଭାଷା ବିବର୍ଦ୍ଧିନୀ ସମାଜ'ର ସମ୍ପାଦକ ହେଲେ । ଓଡ଼ିଆ ଯୁବ ସମାଜର ବଳିଷ୍ଠ ନେତୃତ୍ୱ ନେଲେ । ଏହି ଅବସରରୁ ସେ ଉତ୍କଳର ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ନିକଟ ସମ୍ପର୍କରେ ଆସିବାକୁ ଲାଗିଲେ । କିନ୍ତୁ ପାରଳାଖେମୁଣ୍ଡି ମାନ୍ଦ୍ରାଜ ପ୍ରଦେଶରେ ଅଧୀନ ଥିବାରୁ ଓ ଅନ୍ଧ୍ର-ଭାଷୀଙ୍କ ପ୍ରଭାବରେ ଚାଲୁଥିବାରୁ ତାଙ୍କୁ ବହୁ ବାଧାବିଘ୍ନର ସମ୍ମୁଖୀନ ହେବାକୁ ପଡ଼ିଲା । ସେ ତେଲୁଗୁ ଶିକ୍ଷକମାନଙ୍କର ବିଷ ଦୃଷ୍ଟିରେ ପଡ଼ିଲେ । ଉତ୍କଳ ସମ୍ମିଳନୀ ସମର୍ଥିତ ପକ୍ଷରୁ ବ୍ୟବହାର କରି ଚରମ ପ୍ରତିକୂଳ ଅବସ୍ଥାର ସମ୍ମୁଖୀନ ହେଲେ । ଯଦିଓ ସେ କ୍ଲାସରେ ଭଲ କରୁଥିଲେ ଓ ମାଟ୍ରିକ୍ ସିଲେକ୍ସନରେ ତାଙ୍କୁ ଫେଲ୍ କରାଗଲା । ଏଥିକରେ ତାଙ୍କ ଉଚ୍ଚ ଶିକ୍ଷାର୍ଜନରେ ପୂର୍ଣ୍ଣଚ୍ଛେଦ ପଡ଼ିଲା ।

ତାଙ୍କର ସଙ୍କଳ୍ପ ଥିଲା ସେ ତାଙ୍କ ଜେଜେ ଓ କାଳିଆବାପାଙ୍କ ପରି ହେବେ । ତେଣୁ ସେ ବିଶେଷ ଅସ୍ଥିର ହୋଇ ପଡ଼ିଥିଲେ । ତାଙ୍କ ନିଜ ଭାଷାରେ "ମନୁଷ୍ୟ ଜୀବନ ତା'ର ଯୋଜନାର ଅନୁବର୍ତ୍ତୀ ନୁହେଁ । ସେ ଯାହା କଳ୍ପନା କରେ ତାହା ସେ ଠିକ୍ ସମୟରେ ପାଇ ନ ଥାଏ । ମୁଁ ସଙ୍କଳ୍ପ କରିଥିଲି, ଯେତେ ଦୁଃଖ କଷ୍ଟ ହେଉ ପଛେ ଅନ୍ତତଃ ମୁଁ ବି. ଏ. କି ଏମ୍. ଏ. ନିଶ୍ଚୟ ପଢ଼ିବି । ମୋର ଜେଜେ ବାପାଙ୍କ ସୁଖ୍ୟାତି ଓ କାଳିଆ ବାପାଙ୍କ * ପ୍ରତିଭା ଓ ସମ୍ମାନ ମୋତେ ଏ କଥା ବାରମ୍ବାର ସ୍ମରଣ କରାଇ ଦେଉଥିଲା । ଅବଶ୍ୟ ଚାକିରୀ କରିବା ଲାଳସା ମୋର କିମ୍ବା ମୋର ପରିବାରରେ କାହାରି ନ ଥିଲା । କାରଣ ଆମର ଭୂସମ୍ପତ୍ତି ଏତେ ପ୍ରଚୁର ଯେ ଅଭାବ କ'ଣ ଆମେ ଜାଣି ନ ଥିଲୁ । ଆମ ପରିବାରର ରାଜକୀୟ ସମ୍ମାନ ହେତୁ ସମାଜରେ ଯଥେଷ୍ଟ ପରିମାଣରେ ପ୍ରତିପତ୍ତି ରହିଥିଲା ।

---

* କାଳିଆ ବାପା ଶ୍ୟାମସୁନ୍ଦର ରାଜଗୁରୁ ଗଞ୍ଜାମର ପ୍ରଥମ ଗ୍ରାଜୁଏଟ୍, ମହାରାଜା କୃଷ୍ଣ ଚନ୍ଦ୍ର ଗଜପତିଙ୍କ ଗୃହ ଶିକ୍ଷକ ସାହିତ୍ୟ ସମାଲୋଚକ ଭାବେ ଓଡ଼ିଶା ବିଖ୍ୟାତ ।

ଏଣୁ ସାହିତ୍ୟ କ୍ଷେତ୍ରରେ, ରାଜନୀତି କ୍ଷେତ୍ରରେ ଏବଂ ସାଂସ୍କୃତିକ ବ୍ୟାପାରରେ ବହୁତ ଅଂଶ ଗ୍ରହଣ କରିବାକୁ ମୁଁ ସ୍ୱତଃ ପ୍ରଣୋଦିତ ହୋଇ କାର୍ଯ୍ୟ କରୁଥିଲି । ତଥାପି ଆତ୍ମସମ୍ମାନ ଜାତୀୟ ମମତା ଅନେକ ସମୟରେ ମୋତେ ଅଥୟ କରି ଦେଉଥିଲା ।"(୧)

୧୯୧୮ରେ ୧୫ ବର୍ଷ ବୟସରେ ତାଙ୍କର ବିବାହ ଶୁଙ୍ଗୀତି ଶାସନରେ ସମ୍ପନ୍ନ ହୋଇଥିଲା (୨) । ୧୯୧୯ରେ ତାଙ୍କ ପ୍ରିୟତମ ଜେଜେବାପାଙ୍କ ମୃତ୍ୟୁ ହୋଇଥିଲା । ଦଶମ ଶ୍ରେଣୀର ଛାତ୍ର ଥିବାବେଳେ ୧୮ ବର୍ଷ ବୟସରେ ତାଙ୍କର ଆଶୀର୍ବାଦ (ନିର୍ବନ୍ଧ) କାର୍ଯ୍ୟ ସମ୍ପନ୍ନ ହୋଇଥିଲା । ୨୦ ବର୍ଷ ବୟସବେଳେ ସେ ୪୨ ଦିନ ଧରି ଟାଇଫଏଡ୍ ଜ୍ୱରରେ ଶଯ୍ୟାଶାୟୀ ହୋଇଥିଲେ । ସେତେବେଳେ ତାଙ୍କର ପ୍ରଥମ ପୁତ୍ରର ଜନ୍ମ ।

ସକଳ ପ୍ରତିକୂଳ ଅବସ୍ଥା ସତ୍ତ୍ୱେ ତାଙ୍କର ଅଦମ୍ୟ ଉତ୍ସାହ, ଦୁର୍ବାର ଜ୍ଞାନ ପିପାସା ଯୋଗୁଁ ସେ ସିଦ୍ଧି ପ୍ରାପ୍ତି ପାଇଁ ଅବିରାମ ସାଧନା କରିଛନ୍ତି । ତାଙ୍କ ଜୀବନରେ ପ୍ରତିଭାର ହୋମାଗ୍ନି ପ୍ରଜ୍ୱଳିତ ହୋଇଛି । "ପ୍ରତିଭା କେବେ କାହାକୁ ଅପେକ୍ଷା କରେନା, ତାକୁ ଯେ ପରିବେଶଠାରେ ମୁଣ୍ଡ ନୁଆଁଇବାକୁ ନ ପଡ଼େ, ପରିବେଶକୁ ତାର ପ୍ରଚେଷ୍ଟା, ଉଦ୍ୟମ ନିକଟରେ ମୁଣ୍ଡ ନୁଆଁଇବାକୁ ପଡ଼େ ?"

"ସେ ସଂସାରକୁ ଆସିଛନ୍ତି ତାର ବ୍ୟକ୍ତିତ୍ୱର ଶକ୍ତି ଦ୍ୱାରା ଦେଇ ଜ୍ଞାନାର୍ଜନ କରିବେ ଏବଂ ଗଢ଼ିବେ ମୃତ୍ୟୁଞ୍ଜୟ ଅସାଧାରଣ ଅକ୍ଷର କୋଣାର୍କ ସବୁ ।" (୩)

---

୧—ଆତ୍ମଜୀବନୀ ପାଣ୍ଡୁଲିପି ।

୨—ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି, ଜଷ୍ଟିସ୍ ଅଭିମନ୍ୟୁ ମିଶ୍ର ତାଙ୍କ ଶାଳକ ।

୩—ଡଃ ମାୟାଧର ମାନସିଂହ—ସରସ୍ୱତୀ ଫକୀରମୋହନ ।

ସକଳ ବିପଦକୁ ପାଦରେ ପକାଇ ସେ ଆଗକୁ ମାଡ଼ି ଚାଲନ୍ତି । ସାଧନାଚ୍ୟୁତ ହୋଇ ନାହାନ୍ତି । ତପସ୍ୱୀ ସେ । ଈଶ୍ୱରବାଦୀ ସେ । ଗୀତାର ଈଶ୍ୱର ବିଶ୍ୱାସ ତାଙ୍କ ମନକୁ ସ୍ଥିର ରଖିଛି ଓ ଜୀବନକୁ ନିୟନ୍ତ୍ରିତ କରିଛି । ସେ ଲେଖିଛନ୍ତି—

"ବିଭିନ୍ନ ପରିସ୍ଥିତିର ସମ୍ମୁଖୀନ ହୋଇ ମୁଁ ଯେଉଁ ଅବସ୍ଥାରେ ପଡ଼ିଅଛି, ସେଥିରୁ ମୋର ମନେହୁଏ ଯେପରିକି ସଂସାରର ବନ୍ଧୁର ତରଙ୍ଗା-ଘାତରେ ମୁଁ ଏକାକୀ ଓତପ୍ରୋତଃ ଭାବେ ଇତସ୍ତତ ଭାସି ଯାଉଛି । ଯେପରିକି ମୋତେ କଥା କହିବାକୁ କିଛି ସମ୍ବଳ ନାହିଁ । ଏଣୁ ଏକମାତ୍ର ଗୀତାର ପ୍ରବଚନ ମୋର ଗତିପଥକୁ ନିୟନ୍ତ୍ରିତ କରିପାରିବ, ଏହି ଭାବନାରେ ମୁଁ ପ୍ରତ୍ୟହ ନିୟମିତ ରୂପେ ଗୀତା ପାରାୟଣ କରୁଥିଲି ।" ✳

ଛାତ୍ର ଜୀବନରୁ ହିଁ ଶ୍ରୀ ପାଢ଼ୀଗୁରୁଙ୍କ ଲେଖକ ଜୀବନର ଅଗ୍ରାରମ୍ଭ ହୋଇଛି । ସେ ଆଦ୍ୟ ଲେଖକ-ଜୀବନ ସମ୍ପର୍କରେ ଲେଖିଛନ୍ତି—

ମୋର ୧୫ ବର୍ଷ ବୟସରେ ବିବାହପରେ ମୁଁ ମନେକଲି ଯେପରି ହଠାତ୍ ମୁଁ ଜୀବନର ଗୋଟିଏ ସ୍ତରକୁ ଚାଲିଯାଇଛି । ମୋ ମନରେ ପ୍ରୌଢ଼ତ୍ୱ ଖେଳିଗଲା । ସେତିକିବେଳୁ ମୁଁ ଶ୍ରେଷ୍ଠ ଶ୍ରେଷ୍ଠ ପଦ୍ୟ ଲେଖି ତାହା ପତ୍ରିକାରେ ଛପାଇବାକୁ ମନସ୍ଥ କଲି । ମୋର ସ୍ମରଣ ହେଉଛି ହାଇସ୍କୁଲରେ ଥାର୍ଡ ଫର୍ମରୁ ଉତ୍ତୀର୍ଣ୍ଣ ହୋଇ ଯେତେବେଳେ ଇଂରାଜୀ ସିଲେକସନ୍‌ଟେକ୍ଷ୍ଟ ମୋତେ ପଢ଼ିବାକୁ ହେଲା ସେଥିରେ ଗୋଟିଏ ପଦ୍ୟ ମୋର ଆଗ୍ରହ ସୃଷ୍ଟି କଲା । ସେ ପଦ୍ୟଟି ହେଉଛି ସରୋଜିନୀ ନାଇଡ଼ୁଙ୍କର (The Palenquin Bearers) । ଏଥିରୁ ଅନୁବାଦ କରି 'ପାଲିଙ୍କି-ବାହାକ' ନାମରେ ଗୋଟିଏ ପଦ୍ୟ ମୁଁ ଲେଖିଲି । କ୍ଲାସରେ ବସି ପଦ୍ୟ ଲେଖିବା ଠିକ୍ ନୁହେଁ, ଏକଥା ମୋତେ କ୍ଲାସ ଟିଚର ସ୍ମରଣ କରାଇ

✳ ଆତ୍ମଜୀବନୀ ପାଣ୍ଡୁଲିପି ।

ଦେଲେ । ମୁଁ ଏଥିରେ ଲଜ୍ଜିତ ହୋଇ କାଗଜଟି ଉଠେଇ ଦେବାକୁ ଗଲାବେଳେ ମୋ ପାଖରେ ବସିଥିବା ସାଙ୍ଗ ଗୁଡ଼ିକ ତାହା ମୋ ହାତରୁ ଝିଙ୍କି ନେଇଗଲେ । ପରେ ସେ ପଦ୍ୟଟି ପଢ଼ି ସେ କହିଲେ ଏତେ ସୁନ୍ଦର ଭାଷାରେ ଲେଖା ହୋଇଛି । ତମେ ପତ୍ରିକାକୁ ଦିଅ । ନିଶ୍ଚୟ ଛପିବ । ମୁଁ କେଜାଣି କାହିଁକି ତା କଥାରେ ବିଶ୍ୱାସକରି ବ୍ରହ୍ମପୁରରୁ ପ୍ରକାଶ ପାଉଥିବା ମହୁରି ରାଜାଙ୍କର 'ନବୀନ' ପତ୍ରିକାକୁ ପଠାଇ ଦେଲି । ତା'ପର ମାସରେ ପଦ୍ୟଟି ସେହି ପତ୍ରିକାରେ ଛପା ଅକ୍ଷରରେ ବାହାରିବା ଦେଖି ମୋ ଆନନ୍ଦର ସୀମା ରହିଲା ନାହିଁ ।"

ରାଜଗୁରୁ ସାହାବକୁ ଲଗି ଆପଣା ପରିଚ୍ଛାଙ୍କର ଗୋଟିଏ ମଠ ଅଛି । ସେଠାରେ ସ୍ୱର୍ଗୀୟ ଆପଣା ପରିଚ୍ଛା ନିଜେ ଏକ ପୁସ୍ତକାଳୟ ସ୍ଥାପନ କରିଥିଲେ । ତାଙ୍କ ମଠରେ ଓଡ଼ିଆ ସାହିତ୍ୟ, ନାଟକ, ସଙ୍ଗୀତଠାରୁ ଆରମ୍ଭ କରି ଧର୍ମ ଚର୍ଚ୍ଚା ସଙ୍ଗେ ରାଜନୀତି ଓ ସମାଜ ଚର୍ଚ୍ଚା ପ୍ରତ୍ୟେକ ସନ୍ଧ୍ୟା ସମୟରେ ଶିକ୍ଷିତ ଓଡ଼ିଆମାନଙ୍କ ମଧ୍ୟରେ ହେଉଥିଲା । ଏପରିକି ତାହା ଏଠାରେ ଓଡ଼ିଆ ମାନଙ୍କର ଗୋଟିଏ ମିଳନର ସ୍ଥାନ ଏବଂ କ୍ଲବଘର । ଆପଣା ପରିଚ୍ଛାଙ୍କର ପୁତ୍ରର ସୀମାଦ୍ରି ପରିଚ୍ଛା ସେତେବେଳେ ଗୋଟିଏ ଉଚ୍ଚ ପ୍ରାଥମିକ ସ୍କୁଲର ହେଡ୍‌ମାଷ୍ଟର ଥିଲେ । ତାଙ୍କ ମଠର ପୁସ୍ତକାଗାରର ବଙ୍ଗଳା ଭାଷାରେ ଲିଖିତ ବହୁ ନାଟକ ଉପନ୍ୟାସ ରକ୍ଷିତ ଥିଲା । ସେଥିରୁ ଅନୁକରଣ କରି ଟଡ଼ ସାହେବଙ୍କ ଲିଖିତ ରାଜସ୍ଥାନର ବିଷୟ ସଂଗ୍ରହ କରି 'ହମ୍ବୀର' ନାମକ ଗୋଟିଏ ନାଟକ ଓଡ଼ିଆରେ ସେ ରଚନା କରିଥିଲେ । ତାହା ତାଙ୍କର ଉଚ୍ଚପ୍ରାଥମିକ ସ୍କୁଲରେ ବାର୍ଷିକ ଉତ୍ସବ ଉପଲକ୍ଷେ ଅଭିନୀତ ହେଲା । ଶ୍ରୀ ରାଜଗୁରୁ ସେଥିରେ ନାୟକ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ । ତାଙ୍କର ମନହେଲା, ନାଟକ ମାଧ୍ୟମରେ ଶିକ୍ଷା ଅନାୟାସରେ ଲୋକଙ୍କୁ ଦିଆଯାଇପାରେ । କେବଳ ସେତିକି ନୁହେଁ, ଏଥିରେ ସାହିତ୍ୟ ଓ ସଙ୍ଗୀତର ଉତ୍କର୍ଷ ମଧ୍ୟ ସାଧିତ ହୋଇପାରେ । ଏହି ବର୍ଷରେ ସେ କବିତା ଲେଖିବା ଛାଡ଼ି ନାଟକ ଲେଖିବାକୁ ଆରମ୍ଭ କଲେ ।

ସେଥିରୁ ଉପାଦାନ ସଂଗ୍ରହ କରି 'ରାଣୀଚନ୍ଦ୍ର' ନାମକ ଗୋଟିଏ ନାଟକ ଲେଖିଲେ । ତାଙ୍କ ଭାଷାରେ—

"ବଙ୍ଗଳା ଭାଷାରେ ଲେଖା ନାଟକ ଉପନ୍ୟାସ ପଢ଼ିଲା ବେଳେ ମୋର ମନରେ କିଛିଏ ଈର୍ଷା ହେଲା । ଆମ ଓଡ଼ିଆ ଭାଷା ଓ ସାହିତ୍ୟରେ କାହିଁକି ସେପରି ସୁନ୍ଦର ଲେଖା ବାହାରୁ ନାହିଁ । ତେଣୁ ଓଡ଼ିଆରେ ସେତେବେଳେ ପ୍ରକାଶିତ ସବୁ ପୁସ୍ତକ ଉପନ୍ୟାସ ଓ ନାଟକ ଆଣି ମୋ ନିଜର ଗୋଟିଏ ପୁସ୍ତକାଗାର ସୃଷ୍ଟି କଲି । ଓଡ଼ିଆରେ ଓଡ଼ିଆ ଇତିହାସକୁ ଅବଲମ୍ବନ କରି ନାଟକ ଓ ଉପନ୍ୟାସ ଲେଖିବାକୁ ସଂକଳ୍ପବଦ୍ଧ ହେଲି । ଏ ଦିଗରେ ମୁଁ ଯେତେବେଳେ ପ୍ରବୃତ୍ତ ହେଲି, ମୋ ଆଗରେ ଦେଖାଦେଲା ଗୋଟିଏ ବିରାଟ ସମସ୍ୟା, ପୁସ୍ତକର ଅଭାବ । ମୁଁ ମହାରାଜାଙ୍କ ପ୍ରାସାଦରେ ଥିବା ସାଙ୍କର ପ୍ରାଇଭେଟ ଲାଇବ୍ରେରୀ ଅନୁସନ୍ଧାନ କରିବାକୁ ଲାଗିଲି । ସେଥିରୁ 'History of Orissa', ଓ ରାଜେନ୍ଦ୍ରଲାଲ ମିତ୍ରଙ୍କର 'Antiquities of Orissa' ନାମକ ଦୁଇଖଣ୍ଡି ପୁସ୍ତକ ସଂଗ୍ରହ କରି ସେଥିରୁ ମହାରାଜା ଖାରବେଳଙ୍କ ଜୀବନ ଚରିତ ସଂଗ୍ରହ କରିବାକୁ ଚେଷ୍ଟା କଲି । କିନ୍ତୁ ହାୟ ! ହଣ୍ଟରଙ୍କର ଭାଷା ସେ ବୋଧଗମ୍ୟ ନୁହେଁ । ମୁଁ ସେତେବେଳେ ଫୋର୍ଥ ଫର୍ମ (ଆଧୁନିକ ନବମ ଶ୍ରେଣୀ) ମାତ୍ର ପଢ଼ୁଥିଲି । ତେଣୁ ମୋର ଆଶା ଆକାଶ କୁସୁମରେ ପରିଣତ ହେବାର ଉପକ୍ରମ ହେଲା । ଠିକ ସେତିକିବେଳେ ସମ୍ବଲପୁରର ଜଣେ କବିଙ୍କର ଲିଖିତ 'ଖାରବେଳ' ନାମକ କାବ୍ୟ ମୋର ଦୃଷ୍ଟି ଆକର୍ଷଣ କଲା । ସେଥିରୁ କେତେଗୁଡ଼ିଏ ବିଷୟ ନେଇ ମୁଁ ଗୋଟିଏ ନାଟକୀୟ ଗ୍ରନ୍ଥରେ ତାହା ପକାଇବାକୁ ଚେଷ୍ଟା କଲି । କିନ୍ତୁ ସେତେବେଳର ସବୁ ଚେଷ୍ଟା ମୋର ପୂର୍ଣ୍ଣତା ଲାଭ କରି ନଥିଲା । ଘଟଣାର ପ୍ରାୟ ୫।୬ ବର୍ଷ ପରେ ଯେତେବେଳେ ମୁଁ ସ୍କୁଲରୁ ବିଦାୟ ନେଇ ନିଜ ଗୃହରେ ଅଧ୍ୟୟନ କରିବାକୁ ଆରମ୍ଭ କଲି,—ସେତେବେଳେ ମୋର କଳ୍ପିତ 'ଖାରବେଳ' ନାଟକ ଲେଖା ହୋଇପାରିଥିଲା ।"*

ସ୍କୁଲରୁ ବିଦାୟ ନେବାପରେ ଶ୍ରୀ ରାଜଗୁରୁଙ୍କ ଜୀବନର ଗତିଧାରା ବହୁମୁଖୀ ହୋଇଗଲା । ସେ ନାନା କାର୍ଯ୍ୟରେ ହାତ ଦେଲେ । ସଂସ୍କୃତ,

* ଆତ୍ମଜୀବନୀ ପାଣ୍ଡୁଲିପି ।

ଭାଷାତତ୍ତ୍ୱ, ଧ୍ୱନିତତ୍ତ୍ୱ, ଲିପିତତ୍ତ୍ୱ, ଜାତିବର୍ଣ୍ଣନ, ଇତିହାସ ଆଦି ଅଧ୍ୟୟନ କଲେ । ଅନୁଶୀଳନ ଅଧ୍ୟବସାୟରେ ଆପଣାର ଦୃଷ୍ଟିଭଙ୍ଗୀକୁ ଶାଣିତ କଲେ । ନିୟମିତ ସାହିତ୍ୟ ଓ ଇତିହାସ ରଚନା କଲେ । ତାଙ୍କର ଅଧର କୀର୍ତ୍ତିର ମୂଳରେ ଜାତିପ୍ରୀତି ନିହିତ । ସ୍ୱତନ୍ତ୍ର ଓ ସମୃଦ୍ଧ ଓଡ଼ିଶା ନିର୍ମାଣ ପାଇଁ ହିଁ ତାଙ୍କ ସମସ୍ତ କର୍ମ ଅଭିପ୍ରେତ ।

ସଂସ୍କୃତ କଲେଜର ଅଧ୍ୟକ୍ଷ ଶ୍ରୀ ମଧୁସୂଦନ ମହାପାତ୍ରଙ୍କ ଠାରୁ ସେ ସଂସ୍କୃତ ଶିକ୍ଷା କରିଥିଲେ ଏବଂ ଭାରତର ପ୍ରଖ୍ୟାତନାମା ଐତିହାସିକ ଏବଂ ଗବେଷକ ଶିକ୍ଷାଗୁରୁ ରାମମୂର୍ତ୍ତି ଓଡ଼ିଆ ପଢ଼ାଇ ତାଙ୍କଠାରୁ ସେ ଏପିଗ୍ରାଫି (ଲିପିତତ୍ତ୍ୱ) ଶିକ୍ଷା କରିଲେ । Oriental Title Examination ଦେଇ ଉଭୟ ଭାଷା ପ୍ରାଜ୍ଞ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ୧୯୨୩ରେ ଅଭିଲେଖ ପାଠ ଆରମ୍ଭ କଲେ । ୧୯୨[illegible]ରେ ତାଙ୍କର ସର୍ବପ୍ରଥମ ଇଂରାଜୀ ପ୍ରବନ୍ଧ "The Korashanda Copper Plate Grant of Visakhavarmma" 'The Journal of Bihar-Orissa Research Society'ରେ ପ୍ରକାଶ ପାଇଲା । କ୍ରମଶଃ ତା ଉପରେ ଭାରତର ବିଖ୍ୟାତ ଗବେଷକଙ୍କ ଦୃଷ୍ଟି ପଡ଼ିଲା । ଗବେଷଣା ତାଙ୍କର ଜୀବନ ହୋଇଗଲା । ଶୟନେ ସ୍ୱପନେ ଜାଗରଣେ ସେ କେବଳ ଗବେଷଣାର ପୃଥିବୀକୁହିଁ ଦେଖିଲେ ।

ଘୋର ଅନୁଶୀଳନ, ଅପାର ଶ୍ରଦ୍ଧା ଏବଂ ଅସମ୍ଭବ ଅଧ୍ୟବସାୟ ଯୋଗୁଁ ତାଙ୍କର ରାଶି ରାଶି ଗବେଷଣାମୂଳକ ପ୍ରବନ୍ଧ ଓ ଅନ୍ୟାନ୍ୟ ଲେଖା ବିଶିଷ୍ଟ ପତ୍ରିକା ମାନଙ୍କରେ ପ୍ରକାଶ ପାଇବାକୁ ଲାଗିଲା । Bihar Orissa Rescarch Society, Andhra Historical Reserch Society, Kalinga Historical Research Society, Bihar Research Societyର Journal. Orissa Historical Research Journal, ଉତ୍କଳ ସାହିତ୍ୟ, ସହକାର, ଆଶା, ନବୀନ ସମାଜ, New Orissa, ପ୍ରାଚୀ ଚତୁରଙ୍ଗ, ମନୋରମା, ଚନ୍ଦ୍ରକଳା ଆଲୋକ ବୀଣା,

ଡିଗର, ନବସ୍ୱରଡ, ସ୍ୱଗଡଜ୍ୟୋତି, କୋଣାର୍କ, ଝଙ୍କାର ପ୍ରଭୃତିରେ ତାଙ୍କ ଲେଖା ସବୁ ପ୍ରକାଶ ପାଇଲା ।

ଗବେଷଣାତ୍ମକ ପ୍ରବନ୍ଧ ମଧ୍ୟରେ ନାରାଜ ଦର୍ଶନ, ଉତ୍କଳୀୟ ଲିପିତତ୍ତ୍ୱ, ଡାଳଦ୍ୱାରର ଚନ୍ଦ୍ରତତ୍ତ୍ୱ, ଉତ୍କଳର ପ୍ରାଚୀନ ପତାକା ଜାତି, ଜଗନ୍ନାଥଙ୍କ କାବ୍ୟରେ ନାମର ସ୍ଥାନ, ଓଡ଼ିଶାର ଆଦିମ ଜାତି ସନ୍ଧାନ, ଦେଶ ମିଶ୍ରଣର ଇତିହାସ, ଜାପାନର ଜଟମୋକ୍ଷ, ବଂଗାଳି ଜମିଦାରଙ୍କର କଲିଙ୍ଗିବେଲୁ ରହସ୍ୟ, କବି ଗୌରହରିଙ୍କର ଜୀବନୀ, ଉତ୍କଳ ଶିଳ୍ପ ଲୋକଲୁଗା, ଓଡ଼ିଶା ସଙ୍ଗୀତ, କଳିଙ୍ଗ ସଙ୍ଗୀତ, ଓଡ଼ିଶାର ଭୂସମ୍ପଦ, ସାମରିକ ଓଡ଼ିଆ, ଲଙ୍କା ଦ୍ୱୀପରେ କଳିଙ୍ଗ ସଭ୍ୟତା, ହୁଏନ୍‌ସାଙ୍କର ଓଡ଼ିଶା ଯାତ୍ରା, ଦଣ୍ଡକାରଣ୍ୟର ଐତିହାସିକ ପରିଚୟ, ବୌଦ୍ଧଶିଳ୍ପ ଓ ବୈଦିକ କଳା, ଜାତି ଓ ସାହିତ୍ୟ ଗବେଷଣା ଲିଙ୍ଗରାଜ ମନ୍ଦିର ଶିଳାଲିପି ଓ ସାଧୁପ୍ରଧାନ ଜୟଦେବ, କଳିଙ୍ଗ ଶ୍ୱେତ କପୁର ଓ ଜୈନ ଧର୍ମ, ଚୋଡ଼ଗଙ୍ଗ, ଚୋଡ଼ଗଙ୍ଗଙ୍କ ବରଜା ମନ୍ଦିର ଲିପି, History of Eastern Gangas of kalinga, Heirographic letters of Naraj. The Odras & Their Predomenancy, The Historical Research in Orissa, The Konduli copper plate Grant of Narasimha Deva of Saka 1305, Sumandal Plates of Dharmaraj ପ୍ରଭୃତି ବିଶେଷଭାବେ ଉଲ୍ଲେଖନୀୟ । ସହସ୍ରାଧିକ ପୃଷ୍ଠାର ପ୍ରବନ୍ଧ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶ ପାଇଛି । 'ଗୋଟିଏ ଦେଶର ପ୍ରଗତି ସେଠାର ଗବେଷଣା ଏବଂ ଆବିଷ୍କାର କାର୍ଯ୍ୟ ଉପରେ ନିର୍ଭର କରେ । ×× ନୂତନ ଆବିଷ୍କାର ହିଁ ଜାତୀୟ-ଶକ୍ତିର ମାନଦଣ୍ଡ ।" *

ସେ ତାଙ୍କର ଆଦ୍ୟ ଲେଖକ ଜୀବନରେ ମଧ୍ୟ ଅନେକ ସର୍ଜନାତ୍ମକ ସାହିତ୍ୟ ସୃଷ୍ଟି କରିଛନ୍ତି । ପାଲଙ୍କି ବାହକ, ସ୍ୱପନେ ଚୁମ୍ବନ ଆଦି କବିତା ରକ୍ତ ଗୋଲାପ, ରାଜନର୍ତ୍ତକୀ, ଗଳ୍ପ 'କର୍ମ କ୍ଷେତ୍ର' ଉପନ୍ୟାସ (ଅପ୍ରକାଶିତ)

* ଗବେଷଣା—କୋଣାର୍କ ୨/୩-୪, ୧୯୬୪ ।

ପ୍ରଭୃତି ସହକାର, ନକ୍ସନ, ପ୍ରଫପରେ ପ୍ରକାଶ ପାଇଥିଲ । 'ରସିକ ରଙ୍ଗ-ସଙ୍ଘ'ର ଅଧ୍ୟକ୍ଷ ପ୍ରେମୀ ଦମ୍ପତ୍ତିଙ୍କ ଅନୁରୋଧରେ ସେ ରାଧାକୃଷ୍ଣ ଲୀଳା ବିଷୟକୁ ନେଇ "ବ୍ରଜେଶ୍ୱରୀ" ନାଟକ ରଚନା କରିଥିଲେ । ତାହା ସଙ୍ଘ ଦ୍ୱାରା ଓଡ଼ିଶାର ବହୁ ସ୍ଥାନରେ ଅଭିନୀତ ହୋଇଥିଲ । ୧୯୨୮ରେ ଆଶା-ପ୍ରେସର ମୁଦ୍ରିତ ହୋଇଥିଲ । ୧୯୨୯ରେ ସେ ଓଡ଼ିଶାର ପ୍ରଥମ ସ୍ଥାୟୀ ରଙ୍ଗମଞ୍ଚ 'ଚନ୍ଦ୍ରକାନ୍ତ ରଙ୍ଗାଳୟ'ର ପରିଚାଳନା ଦାୟିତ୍ୱ ନେଲେ । ୧୯୩୫ ପର୍ଯ୍ୟନ୍ତ ଶ୍ରୀ ରାଜଗୁରୁ ଓଡ଼ିଶାର ନାଟ୍ୟଶିଳ୍ପ ସହ ଘନିଷ୍ଠ ଭାବେ ସମ୍ପୃକ୍ତ ଥିଲେ ।

କେବଳ ଏତିକ ନୁହେଁ, ଦେଶର ରାଜନୈତିକ ବାତାବରଣ ମଧ୍ୟ ତାଙ୍କୁ ଜାଗ୍ରତ ରଖିଥିଲ । ସେ ସ୍ୱତନ୍ତ୍ର ଓଡ଼ିଶା ଆନ୍ଦୋଳନରେ ଜଣେ ସକ୍ରିୟ ସୈନିକ ଭାବେ କାର୍ଯ୍ୟ କରୁଥିଲେ । ଓଡ଼ିଶାର ସୀମା ନିର୍ଣ୍ଣୟ, ଓଡ଼ିଆ ଭାଷା ସାହିତ୍ୟର ପ୍ରାଚୀନତାର ପ୍ରମାଣ କରି ସେ ପ୍ରବନ୍ଧମାନ ଲେଖିଥିଲେ । ସାମୟିକ ଘଟଣାବଳୀ ଉପରେ ପ୍ରବନ୍ଧ, ସମ୍ପାଦକଙ୍କୁ ପତ୍ର ଓ ବର୍ତ୍ତମାନ ପତ୍ର ପତ୍ରିକାକୁ ଦେଉଥିଲେ । * ଉତ୍କଳ ସମ୍ମିଳନୀର ନାନା କାର୍ଯ୍ୟ ପାରଳାଖେମୁଣ୍ଡିରେ କରୁଥିଲେ ଏବଂ ଦେଶ ମିଶ୍ରଣ ଆନ୍ଦୋଳନରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କୁ ସଦା ସର୍ବଦା ସାହାଯ୍ୟ କରୁଥିଲେ । ୧୯୩୧ରେ ତାଙ୍କର "ଜନନୀ ଉତ୍କଳ" ନାମକ ଏକ ଦେଶାତ୍ମବୋଧମୂଳକ ଖଣ୍ଡ କାବ୍ୟ 'ଉତ୍କଳହିତୈଷିଣୀ' ଅନୁଷ୍ଠାନ ଆନୁକୂଲ୍ୟରେ ପ୍ରକାଶ ପାଇଥିଲ । ଓଡ଼ିଆ ଭାଷା ପାଇଁ ଓ ସ୍ୱତନ୍ତ୍ର କ୍ଷୁଦ୍ରଲିପିର ଆବିଷ୍କାର କରିଥିଲେ । କିନ୍ତୁ ଅନ୍ୟତ୍ର ସେ ସମୟରେ ଏହା ଆବିଷ୍କୃତ ହୋଇ ଯାଇଥିବା ଯୋଗୁଁ ସେ ସେଥିପ୍ରତି ଧ୍ୟାନ ଦେଇ ନ ଥିଲେ । ୧୯୩୬ ଅପ୍ରେଲ ୧ ତାରିଖରେ ଓଡ଼ିଶା ପ୍ରଦେଶ ଗଠିତ ହେଲ । ଓଡ଼ିଶାର ପ୍ରଥମ ମନ୍ତ୍ରିମଣ୍ଡଳ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଅଧ୍ୟକ୍ଷତାରେ ଗଢ଼ାଗଲ ।

---

* ଦୈନିକ ଆଶା ୩-୪—୧୯୩୧
,, ୨୬-୩—୧୯୩୧
New Orissa ୨୫-୧—୧୯୩୪ ପ୍ରଭୃତି ଦ୍ରଷ୍ଟବ୍ୟ

ମହାରାଜାଙ୍କ ନିକଟତମ ଲୋକ ସ୍ୱଭାବରେ ଓ ଜଣେ ନିସ୍ୱାର୍ଥପର କର୍ମଠ ବୁଦ୍ଧିଜୀବୀ ତଥା ଦେଶଭକ୍ତ ଭାବରେ ତାଙ୍କର ଓଡ଼ିଶା ରାଜନୀତିରେ ଏକ ନମ୍ର ଅଥଚ ଗୁରୁତ୍ୱପୂର୍ଣ୍ଣ ଭୂମିକା ଥିଲା । ମହାରାଜାଙ୍କ ପୃଷ୍ଠପୋଷକତାରେ ବ୍ରହ୍ମପୁରରୁ 'ଉତ୍କଳ ସ୍ୱଦେଶିନୀ' ପ୍ରକାଶ ପାଇଲା ଓ ତା'ର ସମ୍ପାଦକ ଦାୟିତ୍ୱରେ ଶ୍ରୀ ରାଜଗୁରୁ ରହିଲେ । ଓଡ଼ିଶାର ଉନ୍ନତି ପାଇଁ ସେ ପୂର୍ଣ୍ଣ ପ୍ରାଣରେ ଲାଗିଥିଲେ ।

ଭୁବନେଶ୍ୱରରେ ଓଡ଼ିଶାର ନୂଆ ରାଜଧାନୀ ସ୍ଥାନ ନିରୂପଣ ବିଷୟରେ ତାଙ୍କର ପରାମର୍ଶ ବିଶେଷ ଗୁରୁତ୍ୱ ଅର୍ଜନ କରିଥିଲା । ଗଭର୍ଣ୍ଣର ହାବାକ୍ଙ୍କ ପ୍ରାଇଭେଟ ସେକ୍ରେଟେରୀ ମ୍ୟାକ୍ ସାହେବ ତାଙ୍କୁ ବେଶ୍ ପସନ୍ଦ କରୁଥିଲେ । ତେଣୁ ରାଜଗୁରୁଙ୍କର ପରାମର୍ଶ ନେଉଥିଲେ । ଓଡ଼ିଶାର ଅନ୍ୟାନ୍ୟ ଗୁରୁତ୍ୱପୂର୍ଣ୍ଣ ବିଷୟ ନେଇ ସେ New Orissa, ସମାଜ, ଆଶା, ମାଧ୍ୟମରେ କର୍ତ୍ତୃପକ୍ଷଙ୍କର ଦୃଷ୍ଟି ଆକର୍ଷଣ କରୁଥିଲେ । ସେ ୧୯୪୨ରୁ ୪୫ ଯାଏଁ Ganjam District Eduction counsel ର President ୧୭ ବର୍ଷ ପାଇଁ ପାରଳାଖେମୁଣ୍ଡି ମ୍ୟୁନିସିପାଲିଟିର ସଭ୍ୟ ଥିଲେ । ଭାରତ ସ୍ୱାଧୀନ ହେବା ପରେ ଜମିଦାରୀ ଉଠିଗଲା । କୃଷୀମାନେ ଜମିର ମାଲିକ ହୋଇଗଲେ । ତାଙ୍କର ସ୍ଥାୟୀ ଆୟ ଯଥେଷ୍ଟ ପରିମାଣରେ କମିଗଲା । ତେଣୁ ରାଜଗୁରୁ ଜୀବିକାର୍ଜନ ପାଇଁ ଚାକିରୀ କରିବାକୁ ବାଧ୍ୟ ହେଲେ । ତେବେ ଜୀବିକା ତାଙ୍କର ତତ୍ତ୍ୱମୁଖୀ ହେଲା । ୧୯୪୭ରେ ମହାମାପାଟଣାରେ ପାଟଣା କଳାହାଣ୍ଡି ପ୍ରଭୃତି ଗଡଜାତ ରାଜାମାନଙ୍କ ପୃଷ୍ଠପୋଷକତାରେ ପ୍ରତିଷ୍ଠିତ Kalinga Historical Rescarch Society ରେ ସେ ଜଣେ ସହକାରୀ ଭାବେ ଟ୧୮୦/- ଦରମାରେ ନିଯୁକ୍ତ ହେଲେ । ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ସ୍ଥାପିତ ହେବା ପରେ ସେ ମୁଖ୍ୟମନ୍ତ୍ରୀ ଡଃ ହରେକୃଷ୍ଣ ମହତାବଙ୍କ ପରାମର୍ଶ ଓ ଅନୁରୋଧରେ ଭୁବନେଶ୍ୱର ଆସିଲେ ଓ ସେଠାରେ ୧୯୫୦ ଠାରୁ ୧୯୬୧ ଯାଏଁ କ୍ୟୁରେଟର ଓ ୧୯୬୩ରୁ ୧୯୭୦ ଯାଏଁ ଏପିଗ୍ରାଫିଷ୍ଟ ଥିଲେ ।

ସ୍ୱର୍ଗତଙ୍କର ନିଜସ୍ୱ ସଂଗ୍ରହାଳୟରେ ଅବସ୍ଥାପିତ ହୋଇଥିବା ପ୍ରକାଶିତ ଶ୍ରୀ ରାଜଗୁରୁଙ୍କ ମୂଲ୍ୟବାନ ସମୂହ ମଧ୍ୟରେ ନାଗରିକତାର, ଚନ୍ଦ୍ରକଳାନାଟିକା, ମନୋରମା, ଓଡ଼ିଆଲିପିର କ୍ରମବିକାଶ, କଳିଙ୍ଗର ଆତ୍ମକଥା, History of Gangas, Inscription of Orissa, Invocatory verses from Inscriptions· ପ୍ରଧାନ । ତାଙ୍କର ଓଡ଼ିଶା ଇତିହାସ ଓ ତାଙ୍କ ଆତ୍ମଜୀବନୀ ପ୍ରକାଶ ଅପେକ୍ଷାରେ ଅଛି । ଏହି ଦୁଇଟି କୃତି ଏ ପର୍ଯ୍ୟନ୍ତ ଅନ୍ଧକାରରେ ଥିବା ବହୁ ଐତିହାସିକ ବସ୍ତୁ ଉପରେ ଆଲୋକପାତ କରିବ । "ଜଗନ୍ନାଥ ସ୍ଥଳ ବୃତ୍ତାନ୍ତ" ✻ ନାମକ ଏକ ତେଲୁଗୁ ଗ୍ରନ୍ଥ ସେ ସମ୍ପ୍ରତି ଅବସର ଜୀବନରେ ଅନୁବାଦ କରିଛନ୍ତି । ଏହା ଇଂରାଜୀ ଭାଷାରେ ପ୍ରକାଶ ପାଇବାକୁ ଯାଉଛି । ପଶ୍ଚିମ ଜର୍ମାନୀର ଅଧ୍ୟାପକ ହେର୍ମାନ କୁଲ୍‌କେଙ୍କ ସହଯୋଗରେ । ବହୁ ଐତିହାସିକ ତଥ୍ୟ ସମ୍ବଳିତ ବିବରଣୀ ଏଥିରେ ସନ୍ନିବେଶିତ । ଶ୍ରୀ ମନ୍ଦିରର ପରିଚାଳନା ଠାକୁରଙ୍କ ସେବା-ନୀତି ଓ ଦେବ ଦେବାଦାସୀମାନଙ୍କ ସମ୍ବନ୍ଧେ ବହୁ ବିବରଣୀ ଏଥିରେ ଅଛି । ଏହା ପ୍ରାଚୀନ ମାଦଳା ପାଞ୍ଜିର ତେଲୁଗୁ ଅନୁବାଦ । ଓଡ଼ିଶାର ବହୁ ଅଜ୍ଞାତ ଐତିହାସିକ ବିଷୟକୁ ଏହା ଉଦ୍‌ଘାଟନ କରିବ ।

'ପ୍ରହ୍ଲାଦ ଚିନ୍ତାମଣି' ଅଷ୍ଟାଦଶ ଶତାବ୍ଦୀର ଏକ ପ୍ରାଚୀନ ଗଦ୍ୟ ଉପନ୍ୟାସ ଶ୍ରୀ ରାଜଗୁରୁ ସମ୍ପାଦନା କରିଛନ୍ତି । ଏହା ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ପ୍ରକାଶ ପାଇବାକୁ ଯାଉଛି । ଖଲ୍ଲିକୋଟ୍‌ର ମାଳାମ୍ବର ବିଦ୍ୟାଧରଙ୍କ ଦ୍ୱାରା ୧୬୦୮ ଶକାବ୍ଦ (୧୬୮୬ ଖ୍ରୀ.) ରେ ଏହା ରଚିତ ।

ଏହେରେ ଆମେ ଅନେକ କିଛି ଶ୍ରୀ ରାଜଗୁରୁଙ୍କଠୁ ପାଇଛୁ ଓ ପାଉଛୁ । ତଥାପି ତାଙ୍କର ଅବଦାନ ଯେ ଆହୁରି ଅନେକ ରହି ଯାଇଛି ! ସେ କହନ୍ତି—

✻ ଶ୍ରୀ ଜଗନ୍ନାଥ ସ୍ଥଳବୃତ୍ତାନ୍ତମ୍—ଉତ୍କଳ ପ୍ରସଙ୍ଗ—
Vol. XXXI No·—12-1975

"ମୋର ଜୀବନ ପ୍ରତ୍ୟୋଷରେ ଯେତେବେଳେ ଚିନ୍ତା କରେ—ମୋ ଜାତି ଲାଗି କିଛି କରି ପାରୁଛି କି ନାହିଁ ସେତେବେଳେ ମନରେ ନିରାଶାର ବାତାବରଣ ସୃଷ୍ଟି ହୁଏ । ଭୌତିକ ବ୍ୟାପାରରେ ଚିନ୍ତା ଓ ସ୍ୱାର୍ଥରେ ବିଶୃଙ୍ଖଳା ନେହଲେହେଁ, ମୋ ଜୀବନର କର୍ମ ମଧ୍ୟ ଗୋଟିଏ ବିଶୃଙ୍ଖଳ କାର୍ଯ୍ୟର ସ୍ତୂପ । କିନ୍ତୁ ଏତିକି ତୃପ୍ତି ଆସେ ଯେ ମୁଁ ଈଶ୍ୱରବାଦୀ, ମୋ କାର୍ଯ୍ୟାବଳୀ ଶକ୍ତି ଅନୁସାରେ ମୋ ଦେଶ ଓ ଜାତିଲାଗି ଉଦ୍ଦିଷ୍ଟ ।" *

ପରିବାରର ଦାରିଦ୍ର୍ୟ ଓ ଜଞ୍ଜାଳ ଅନେକ ସମୟରେ ତାଙ୍କୁ ଅସ୍ଥିର କରେ । ପରିବାରର ଦୁଃଖ କଷ୍ଟ ମଧ୍ୟରେ ପଡ଼ି ତାଙ୍କର ବହୁ ମୂଲ୍ୟବାନ ସମୟ ଅଯଥା ନଷ୍ଟ ହୋଇଯାଏ ବୋଲି ସେ ଚିନ୍ତିତ ହୋଇପଡ଼ନ୍ତି । ସେ ଗୃହଜଞ୍ଜାଳ ଏଡ଼ାଇବାକୁ ଅଧିକାଂଶ ସମୟ ସାହିତ୍ୟିକ କର୍ମରେ ମନୋନିବେଶ କରିଥାନ୍ତି । ସେ କହନ୍ତି—

"ପାରିପାର୍ଶ୍ୱିକ ଅସୁବିଧା ଓ ଅଶାନ୍ତି ଯୋଗୁଁ ଅଧିକାଂଶ ସମୟ ମୁଁ ସାହିତ୍ୟିକ କାର୍ଯ୍ୟରେ ଏବଂ ଲେଖାପଢ଼ାରେ କଟାଉଥିଲି । ପରେ ଯେତେ ପରିମାଣରେ ଅଧିକ ଦୁଃଖ ଦୁର୍ଦ୍ଦଶାର ସମ୍ମୁଖୀନ ହୁଏ ତେତେ ଅଧିକ ପରିମାଣରେ ଦିନୁଦିନ ମୁଁ ଲେଖା ପଢ଼ା ଦିଗରେ ମନଦିଏ ।"

ଗବେଷଣା ପ୍ରତି ଏହିପରି ତାଙ୍କର ପ୍ରାଣ ସମର୍ପିତ । ସେ ତପସ୍ୱୀ । ତପସ୍ୟା ତାଙ୍କର ବହୁଜନହିତାୟ । ତାଙ୍କର ଅକ୍ଷର କୀର୍ତ୍ତି, ଅଭିଲେଖ ସଂଗ୍ରହ ଓ ଇତିହାସ ଗ୍ରନ୍ଥ ତାଙ୍କୁ ଅମର କରି ରଖିବ । କୀର୍ତ୍ତିଯସ୍ୟ ସଃ ଜୀବତି । ୧୯୬୫ରେ 'ଗଂଜାମ ସାହିତ୍ୟ ସମ୍ମେଳନ' ବ୍ରୁଗୁଡ଼ାଠାରେ ଏକ ବିରାଟ ସାଧାରଣ ସଭାରେ ମାନପତ୍ରଦେଇ ତାଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରିଥିଲେ । ଓଡ଼ିଶା ସାହିତ୍ୟ ଏକାଡେମୀ, ଶାରଳାର ଗୌରହରି ପାଠାଗାର ପ୍ରଭୃତି ବିଶିଷ୍ଟ ଅନୁଷ୍ଠାନ ତାଙ୍କୁ ସମ୍ବର୍ଦ୍ଧନା ଦେଇ ସମ୍ମାନିତ କରିଛନ୍ତି । ୧୯୭୪ରେ ରାଷ୍ଟ୍ରପତି ଶ୍ରୀ ଭି. ଭି. ଗିରି ତାଙ୍କୁ ପଦ୍ମଶ୍ରୀ ଉପାଧି ପ୍ରଦାନ କରିଛନ୍ତି ।

---

* ସତ୍ୟନାରାୟଣ ରାଜଗୁରୁ—ନବରବି—ଅକ୍ଟୋବର, ୧୯୬୫

୧୯୭୪ରେ ଦିଲ୍ଲୀସ୍ଥିତ ବିଦ୍ୟାଳୟ ଦ୍ୱାରା ସାହିତ୍ୟରେ ସମ୍ମାନଜନକ ଡକ୍‌ଟରେଟ ଉପାଧିରେ ସେ ଭୂଷିତ ହୋଇଛନ୍ତି । ଏବେ ୧୯୭୭ରେ 'ଉତ୍କଳ ପାଠକ ସଂସଦ' କଟକରେ ଏହି ସାଧକ ଶ୍ରେଷ୍ଠଙ୍କୁ ମାନପତ୍ର ଦେବାକୁ ଯାଉଛି ।

ସ୍ୱତନ୍ତ୍ର ଓଡ଼ିଶା ଆନ୍ଦୋଳନ ସମୟରେ ଅନ୍ଧ୍ର ମହାସଭା ପକ୍ଷରୁ ତାଙ୍କୁ ଯେଉଁ 'ସାରଙ୍ଗି ଭୂଷଣ' ଉପାଧି ପ୍ରଦାନ କରାଯାଇଥିଲା, ତା' ମୂଳରେ ଏକ ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ନିହିତ ଥିଲା—ଓଡ଼ିଆ ଆନ୍ଦୋଳନରୁ ଶ୍ରୀ ଦଳଗୁରୁଙ୍କୁ ବିଚ୍ଛିନ୍ନ କରିଦେବା । ଯେଉଁ କାରଣରୁ ତାଙ୍କୁ ଏହି ଉପାଧି ଦିଆଯାଇଥାଉ ନା କାହିଁକି, ସେ ଏହି ଉପାଧି ପାଇଁ ପ୍ରକୃତରେ ଯୋଗ୍ୟ ବ୍ୟକ୍ତି ଅଟନ୍ତି । ତେଣୁ ତାଙ୍କୁ ଯଥାର୍ଥରେ "ସାରଙ୍ଗିଭୂଷଣ ସାହିତ୍ୟାଚାର୍ଯ୍ୟ" ବୋଲି କୁହାଯାଇ ପାରିବ ।

# ରୁଚିବନ୍ତ ପ୍ରକାଶକ ଗୋକୁଳଚନ୍ଦ୍ର

ଶ୍ରୀ ପ୍ୟାରୀମୋହନ ମହାନ୍ତି

ଗୋଟିଏ ଜାତିର ସଂସ୍କୃତି, ଚେତନା ଏବଂ ତାର ଗୌରବମୟ ମୂଲ୍ୟବୋଧର ପ୍ରକୃତ ପରିଚୟ ମିଳେ ତାର କଳା, ସାହିତ୍ୟ ଏବଂ ସ୍ଥାପତ୍ୟରୁ, କିନ୍ତୁ ଏହାର ସ୍ରଷ୍ଟା ଓ ତାର ସୃଷ୍ଟି କଳାକୁ ବଞ୍ଚାଇ ରଖିବାର ଦାୟିତ୍ୱ ହେଲା ସମାଜ ବା ଜାତିର । ଯେଉଁ ଜାତି ସ୍ରଷ୍ଟାକୁ ସମ୍ମାନ ଦେଇ, ତାର କଳାକୁ ବଞ୍ଚାଇ ରଖି ଦେଶବିଦେଶରେ ତାର ଯଥାର୍ଥ ପରିଚୟ ପ୍ରଦାନ କରିପାରିଛି; ସେହି ପରିମାଣରେ ଗରୀୟାନ୍ ଏବଂ ବରୀୟାନ୍ ହୋଇଛି । ଯେଉଁ ସମୟରେ ସାହିତ୍ୟର ପ୍ରସାର ଘଟି ନଥିଲା, ସେତେବେଳେ କୌଣସି ଜାତି ବା ଦେଶ ସମ୍ପର୍କରେ ସବିଶେଷ ଜ୍ଞାନ ଆହରଣ କରିବା ସମ୍ଭବପର ନଥିଲା । ଗୋଟିଏ ଜାତିର ସମସ୍ତ ଗୌରବ ଗୋଟିଏ କ୍ଷୁଦ୍ର ପରିସର ମଧ୍ୟରେ ସୀମାବଦ୍ଧ ହୋଇ ରହିଥିଲା । କିନ୍ତୁ ଆଧୁନିକ ଯୁଗରେ ପ୍ରଚାରର ପରିବେଶକୁ ଅଧିକ ସଂପ୍ରସାରିତ କରନ୍ତି ପ୍ରକାଶନ ସଂସ୍ଥା ଏବଂ ପ୍ରକାଶକ । ଉଚ୍ଚକୋଟୀର ସାହିତ୍ୟ ସୃଷ୍ଟି କରିବାରେ ଜଣେ ସାହିତ୍ୟିକର ଯେତିକି ଦାୟିତ୍ୱ ରହିଛି, ତାକୁ ପାଠକମାନଙ୍କ ନିକଟରେ ସର୍ବାଙ୍ଗସୁନ୍ଦର ଭାବରେ ପହଞ୍ଚାଇବାରେ ପ୍ରକାଶକର ଦାୟିତ୍ୱ ମଧ୍ୟ କୌଣସି ଗୁଣରେ ନ୍ୟୂନ ନୁହେଁ । କେତେକ କ୍ଷେତ୍ରରେ ପ୍ରକାଶକର ନିପୁଣ ପ୍ରକାଶଭଙ୍ଗୀ ଏବଂ ସୁନ୍ଦର ପରିପାଟି ସ୍ରଷ୍ଟାର ସୃଷ୍ଟି କଳାକୁ ଆହୁରି ମନୋରମ ଏବଂ

ଚିତ୍ତାକର୍ଷକ କରି ଗଢ଼ି ତୋଳେ । ତେଣୁ ସାହିତ୍ୟ ସୃଷ୍ଟି କ୍ଷେତ୍ରରେ ଉଭୟେ ଉଭୟର ପରିପୂରକ ।

ସାହିତ୍ୟ, ଚିତ୍ର, ଭାସ୍କର୍ଯ୍ୟ ଇତ୍ୟାଦି କଳାପରି ପ୍ରକାଶନ ଗୋଟିଏ କଳା । ପ୍ରକାଶକର ସୌନ୍ଦର୍ଯ୍ୟବୋଧ ଉପରେ ପ୍ରକାଶନ କଳାର ଉତ୍କର୍ଷ ନିର୍ଭର କରେ । ପ୍ରକାଶନ କଳା ଯେ ସାହିତ୍ୟର ପ୍ରକାଶ ଏବଂ ତାର ସୌନ୍ଦର୍ଯ୍ୟ ବୃଦ୍ଧି ପାଇଁ ଉଦ୍ଦିଷ୍ଟ ତା ନୁହେଁ, ସମାଜଗଠନ ପାଇଁ ଏହାର ଆବଶ୍ୟକତା ଯଥେଷ୍ଟ ଗୁରୁତ୍ୱପୂର୍ଣ୍ଣ । ଏହି କଳାକୁ ଯଦି ଦୁଇଭାଗରେ ବିଭକ୍ତ କରାଯାଏ, ତାହେଲେ ଏହାର ମୁଖ୍ୟ ବିଭାଗ ହେବ—ସମାଜର ଆବଶ୍ୟକତା ପୂରଣ କରି ସମାଜଗଠନ ଏବଂ ଗୌଣ ବିଭାଗ ହେବ—ସୌନ୍ଦର୍ଯ୍ୟ ସୃଷ୍ଟି । ଆମ ଦେଶର ପ୍ରକାଶନ ସଂସ୍ଥାର ରୂପରେଖ ସମ୍ପର୍କରେ ଆଲୋଚନା କରାଗଲେ ଆମ ରାଜ୍ୟର ପ୍ରକାଶନ ସଂସ୍ଥାର ଜନ୍ମ ଏବଂ ବିକାଶ ମଧ୍ୟ ପୁରାତନ ନୁହେଁ ତଥାପି ଅର୍ବାଚୀନ ନୁହେଁ । ଆମ ରାଜ୍ୟରେ ପୁରାତନ ଶାସ୍ତ୍ରକାର, ପୁରାଣକାର ଓ ପରବର୍ତ୍ତୀକାଳର କବି ବା ଲେଖକମାନେ ଯେତେବେଳେ ଶାସ୍ତ୍ର, ପୁରାଣ କାବ୍ୟ କବିତା ଆଦି ସୃଷ୍ଟି କଲେ, ସେତେବେଳେ ଆଧୁନିକଯୁଗର Printing Press ଛାପାଖାନାର କଳ୍ପନା ହୁଏତ ସେମାନଙ୍କ ମନରେ ସ୍ଥାନ ପାଇ ନଥିଲା । ତାଳପତ୍ରର ଖେଦାଉପରେ ଲୁହାର ଲେଖଣୀ ମୁନରେ ସେମାନେ ଗୋଲାକାର ଓଡ଼ିଆ ଅକ୍ଷରରେ ଲେଖୁଥିଲେ । ତାଳପତ୍ର ଉପରେ ଲେଖଣୀ ମୁନରେ ଲେଖିବା ବହୁ ଆୟାସ ପୂର୍ଣ୍ଣ ଓ ସମୟସାପେକ୍ଷ ଥିଲା । ସେଥିପାଇଁ ତାଳପତ୍ର ପୋଥିର ସଂଖ୍ୟା କମ୍ ଥିଲା ଏବଂ ଲେଖକର ବହୁ ମୂଲ୍ୟବାନ କୃତି ସବୁ ପାଠକଙ୍କ ନିକଟରେ ପହଞ୍ଚିବା ମଧ୍ୟ ସମ୍ଭବପର ନଥିଲା । ଓଡ଼ିଆ ଭାଷାର ଅନେକ ଗବେଷକଙ୍କର ମତ ଯେ ପୂର୍ବରୁ ତାଳପତ୍ର ଉପରେ ଲେଖଣୀ ମୁନରେ ଲେଖାଯାଉଥିବାରୁ ଓଡ଼ିଆ ଲିପିର ଆକାର ଦେଖିବାକୁ ଗୋଲାକାର । କାରଣ ଲମ୍ବା କମ୍ବା ଅନ୍ୟ ଆକାରର ଲିପି ତାଳପତ୍ର ଉପରେ ଲେଖିବା ସୁବିଧାଜନକ ନୁହେଁ । ତାଳପତ୍ର ପରେ ଭୂର୍ଜପତ୍ର ଏବଂ ତା'ପରେ କାଗଜ ଆବିଷ୍କାର ହେବାପରେ କାଗଜ ଉପରେ ବିଭିନ୍ନ ରଙ୍ଗର କାଳିରେ ଲେଖା ଆରମ୍ଭ

ହେଲା । ଏଥିରେ ଲେଖା ସହଜ ହେଲେ ମଧ୍ୟ ପୁସ୍ତକ ପ୍ରଚାର କ୍ଷେତ୍ରରେ ହାତଲେଖା ପୁସ୍ତକର ପ୍ରଚାର ବାଧାପ୍ରାପ୍ତ ଏବଂ ସଂକୀର୍ଣ୍ଣ ହେଲା ।

ଦଶମ ଶତାବ୍ଦୀଠାରୁ ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଏହି ନଅଶହ ବର୍ଷର ଇତିହାସ ଆଲୋଚନା କଲେ ଜଣାଯାଏ ଯେ ଏହି ସମୟ ମଧ୍ୟରେ ଓଡ଼ିଆ ଭାଷାରେ ଯେତେଜଣ କବି ବା ଲେଖକ ଲେଖନୀ ଚାଳନା କରିଥିଲେ ଉପଯୁକ୍ତ ଛାପାଖାନା ଅଭାବରୁ ସେମାନେ ପର୍ଯ୍ୟାପ୍ତ ହାରରେ ଲୋକଲୋଚନକୁ ଆସିପାରି ନଥିଲେ । ସେତେବେଳେ କେତେକ ଅଞ୍ଚଳର ରାଜା ଜମିଦାରମାନେ ସାହିତ୍ୟ ଓ କଳାର ପୃଷ୍ଠପୋଷକତା କରୁଥିଲେ । କିନ୍ତୁ ପ୍ରକାଶନ ସଂସ୍ଥା ବା ଛାପାଖାନା ଅଭାବରୁ ସେସବୁର ଯଥାର୍ଥ ପ୍ରକାଶ ବା ପ୍ରଚାର ହୋଇପାରି ନଥିଲା ।

କିନ୍ତୁ ୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶା ଦଖଲ କରିବା ପରେ ପରେ ଇଂରେଜ ମିସନାରୀମାନେ ଓଡ଼ିଶାରେ ଖ୍ରୀଷ୍ଟଧର୍ମର ପ୍ରଚାର ପାଇଁ ଲାଗି ପଡ଼ିଲେ । ତେଣୁ ସେମାନେ ପ୍ରଥମେ ବାଇବେଲକୁ ଓଡ଼ିଆ ଭାଷାରେ ପ୍ରକାଶ କରିବାର ଆବଶ୍ୟକତା ଅନୁଭବ କଲେ । ସେତେବେଳେ ଓଡ଼ିଶାରେ ଛାପାଖାନା ନଥାଏ । କିନ୍ତୁ ସେତେବେଳକୁ ସେମାନେ ଅନ୍ୟାନ୍ୟ ଭାରତୀୟ ଭାଷାରେ ଲିପି ଖୋଦନ କରି ବାଇବେଲ ପ୍ରଚାର କାର୍ଯ୍ୟ ଆରମ୍ଭ କରିସାରିଥିଲେ । ୧୮୦୪ ମସିହା ସେପ୍ଟେମ୍ବର ୨୦ ତାରିଖରେ ଫୋର୍ଟ ଉଇଲିୟମ କଲେଜର ଗୋଟିଏ ଖବରରୁ ଜଣାପଡ଼ୁଛି ଯେ ଧର୍ମପ୍ରଚାର ପାଇଁ ମିଷ୍ଟର କେରୀ ପ୍ରଥମେ ଓଡ଼ିଆ ଲିପିରେ ଛାପିବା ପାଇଁ ଓଡ଼ିଆ ଲିପି ଖୋଦନ କାର୍ଯ୍ୟ ଆରମ୍ଭ କରିଥିଲେ । ଏହି ଖୋଦନ କାର୍ଯ୍ୟରେ ତାଙ୍କୁ ସାହାଯ୍ୟ କରିଥିଲେ ପଞ୍ଚାନନ ମିସ୍ତ୍ରୀ । ଏହାପରେ ଧର୍ମପ୍ରଚାର ଉଦ୍ଦେଶ୍ୟରେ କଟକରେ ଗୋଟିଏ ମୁଦ୍ରାଯନ୍ତ୍ର ସ୍ଥାପନର ଆବଶ୍ୟକତା ସେମାନେ ଅନୁଭବ କଲେ ଏବଂ ୧୯୩୭ ମସିହାରେ କଟକର ମିଶନରୋଡ଼ରେ ଇଂରେଜମାନେ ଗୋଟିଏ ଛାପାଖାନା ପ୍ରତିଷ୍ଠା କଲେ । ତାର ନାଆଁ ହେଲା ମିଶନ ପ୍ରେସ୍ । ୧୯୩୭ ମସିହାର ଏହି ମିଶନ ପ୍ରେସ ଓଡ଼ିଶାର ସର୍ବପ୍ରଥମ ଛାପାଖାନା ।

ଏହି ପ୍ରେସ୍‌ରେ ମିଶନାରୀମାନେ ଓଡ଼ିଆ ଭାଷାରେ ବାଇବେଲ ଛାପିବା ସଙ୍ଗେ ସଙ୍ଗେ ଖ୍ରୀଷ୍ଟଧର୍ମ ସମ୍ପର୍କୀୟ ପତ୍ର ପତ୍ରିକା ପ୍ରକାଶ ପାଇଁ ଉଦ୍ୟମ କଲେ ଏବଂ ସେମାନଙ୍କ ଉଦ୍ୟମରେ ୧୮୪୯ ମସିହାରେ 'ଜ୍ଞାନରୁଣ' ନାମରେ ଗୋଟିଏ ପତ୍ରିକା ଓଡ଼ିଆରେ ପ୍ରକାଶ ପାଇଲା । 'ଜ୍ଞାନାରୁଣ'ରେ ଓଡ଼ିଆ ଭାଷାର ପ୍ରକୃତ ପରିଚୟ ନ ମିଳିଲେ ମଧ୍ୟ ଏହା ଓଡ଼ିଆ ଭାଷାର ପ୍ରଥମ ପତ୍ରିକା ।

୧୮୬୬ ମସିହାରେ ଓଡ଼ିଶାରେ ନଅଙ୍କ ଦୁର୍ଭିକ୍ଷ ପଡ଼ିଥିଲା । ସେତେବେଳେ ଓଡ଼ିଶାରେ ପତ୍ରପତ୍ରିକା ପ୍ରକାଶନ ଅଭାବରୁ ଲୋକମାନଙ୍କର ଅଭାବ ଅସୁବିଧା, ଦୁଃଖଦୈନ୍ୟ ଇତ୍ୟାଦି ସରକାରଙ୍କ ନିକଟରେ ଯଥାର୍ଥ ଭାବରେ ପହଞ୍ଚି ପାରୁ ନ ଥିଲା । ସେତେବେଳେ ସେରସ୍ତାଦାର ବିଚିତ୍ରାନନ୍ଦ ଦାସ ଓଡ଼ିଶାରେ ଖୁବ୍ ଜଣାଶୁଣା ଲୋକ ଥିଲେ । ଗୋଟିଏ ପତ୍ରିକା ଛପାଇ ଓଡ଼ିଆମାନଙ୍କର ଅଭାବ ଅସୁବିଧା ସମ୍ପର୍କରେ ସରକାରଙ୍କୁ ଜଣାଇବା ପାଇଁ କମିଶନର ରେଭେନ୍‌ସା ସାହେବ ବିଚିତ୍ରାନନ୍ଦ ଦାସଙ୍କୁ ପରାମର୍ଶ ଦେଲେ । ତାପରେ ଶ୍ରୀ ଦାସ ଅନ୍ୟ କେତେଜଣ ଉତ୍ସାହୀ ଯୁବକଙ୍କୁ ନେଇ କଟକରେ ଗୋଟିଏ ଛାପାଖାନା ବସାଇବାର ଉଦ୍ୟମ କଲେ । ତାଙ୍କର ଉଦ୍ୟମ ଫଳରେ ୧୮୬୬ ମସିହାରେ କଟକରେ "କଟକ ପ୍ରିଣ୍ଟିଂ ପ୍ରେସ" ନାମରେ ଗୋଟିଏ ଛାପାଖାନା ଜନ୍ମ ନେଲା । ଏହି କଟକ ପ୍ରିଣ୍ଟିଂପ୍ରେସ ହେଲା ଓଡ଼ିଶାର ଦ୍ୱିତୀୟ ଛାପାଖାନା । ଏହି ପ୍ରେସ୍‌ଟି ବହୁଦିନ ଧରି ଓଡ଼ିଆ ଜାତିର କ୍ଷୁଦ୍ର ଘଟଣାଠାରୁ ଆରମ୍ଭ କରି ବହୁ ବିଶିଷ୍ଟ ଘଟଣା ସହିତ ଜଡ଼ିତ । ସେତେବେଳେ ଏହି ପ୍ରେସ ମାଧ୍ୟମରେ ଓଡ଼ିଆ ଜାତି, ଓଡ଼ିଆ ଭାଷା, ଓଡ଼ିଶାର ରାଜନୈତିକ, ସାମାଜିକ ଓ ଅର୍ଥନୈତିକ ଆନ୍ଦୋଳନର ରୂପରେଖ ପ୍ରକାଶ ପାଉଥିଲା । ଓଡ଼ିଆମାନେ ଏହି ପ୍ରେସ ଜରିଆରେ ସେମାନଙ୍କର ଦାବି ଉପସ୍ଥାପନର ସୁଯୋଗ ପାଇଥିଲେ ।

ଓଡ଼ିଶାର ତୃତୀୟ ଛାପାଖାନା ବାଲେଶ୍ୱରର "ଉତ୍କଳ ପ୍ରିଣ୍ଟିଂ ପ୍ରେସ" ପ୍ରତିଷ୍ଠା ହେଲା ଫକୀରମୋହନଙ୍କ ଦ୍ୱାରା ୧୮୬୮ ମସିହାରେ ।

ଏହାପରେ ୧୮୭୪ ମସିହାରେ ଓଡ଼ିଶାର ଚତୁର୍ଥ ଛାପାଖାନା 'ଦେ ପ୍ରେସ' ନାମରେ ବାଲେଶ୍ୱରରେ ଆତ୍ମପ୍ରକାଶ କଲା । ଏହାପରେ ଗଡ଼ଜାତ ଅଞ୍ଚଳରେ ରାଜାମାନଙ୍କ ପୃଷ୍ଠପୋଷକତାରେ କେତେଗୋଟି ଛାପାଖାନା ମଧ୍ୟ ଆରମ୍ଭ ହେଲା । ୧୮୩୭ରୁ ୧୯୦୦ ମସିହା ପର୍ଯ୍ୟନ୍ତ, ଅର୍ଦ୍ଧ ଶତାବ୍ଦୀରୁ ଅଧିକ ସମୟ ମଧ୍ୟରେ ଓଡ଼ିଶାରେ ଗୋଟିକ ପରେ ଗୋଟିଏ ୧୬ଟି ଛାପାଖାନା ମୁଣ୍ଡ ଟେକି ଉଠିଲା । କିନ୍ତୁ ସେତେବେଳେ ଓଡ଼ିଶାର ପଡ଼ୋଶୀ ରାଜ୍ୟ ବଙ୍ଗଳା ସହିତ ତୁଳନା କଲେ ଛାପାଖାନା କ୍ଷେତ୍ରରେ ଓଡ଼ିଶାର ସ୍ଥାନ ଅନେକ ପଛରେ ଥିଲା । ୧୮୭୫ ବେଳକୁ ବଙ୍ଗଳାରେ ୪୩ଟି ପ୍ରେସ ପ୍ରତିଷ୍ଠା ହୋଇଥିବାବେଳେ ଓଡ଼ିଶାରେ ଗୋଟିଏ "ମିଶନ ପ୍ରେସ୍" ଜନ୍ମ ନେଇଥିଲା । ୧୮୩୭ – ୧୯୦୦ ମଧ୍ୟରେ ଓଡ଼ିଶାରେ ଯେଉଁ କେତୋଟି ଛାପାଖାନା ମୁଣ୍ଡ ଟେକିଥିଲା ସେତେବେଳେ ସେଗୁଡ଼ିକ ଓଡ଼ିଶାର ଯୁବ ଗୋଷ୍ଠୀକୁ ଯାଥାର୍ଥ ମାର୍ଗ ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ଉତ୍କଳ ସାହିତ୍ୟ ପ୍ରସାର କ୍ଷେତ୍ରରେ ଯଥେଷ୍ଟ ସହାୟକ ହୋଇଥିଲା ।

ପ୍ରଶାସନ କ୍ଷେତ୍ରରେ ୧୮୩୮ ମସିହାରେ ପାର୍ଶିଭାଷା ପରିବର୍ତ୍ତେ ଓଡ଼ିଆଭାଷା କଚେରୀ ଭାଷା ରୂପେ ଗୃହୀତ ହେବା ପରେ ସରକାରୀ କଳର ପ୍ରଶାସନିକ ସୁବିଧା ଦୃଷ୍ଟିରୁ ସରକାରୀ କାଗଜଗୁଡ଼ିକ ଇଂରାଜୀ ଓ ବଙ୍ଗଳାରୁ ଓଡ଼ିଆରେ ଅନୁବାଦ ହେଲା । ଏହାପରେ ସରକାରୀ କଳର ମୁଖପତ୍ର "ସରକାରୀ ଗେଜେଟ୍" ମଧ୍ୟ ଓଡ଼ିଆ ଭାଷାରେ ପ୍ରକାଶ ଲାଭ କଲା । ଏହାପରେ ଓଡ଼ିଶାର କେତେଜଣ ପ୍ରଗତିବାଦୀ ଯୁବଲେଖକଙ୍କ ଉଦ୍ୟମରେ କେତେକ ଓଡ଼ିଆ ପତ୍ରିକା ମଧ୍ୟ ପ୍ରକାଶ ଲାଭ କଲା । ସେ ସବୁ ପତ୍ରିକା ମଧ୍ୟରୁ ଅନେକ ଖୁବ୍ କମ୍ ସମୟରେ ବନ୍ଦ ହୋଇଯାଇଥିଲା । ଏହି ପତ୍ର ପତ୍ରିକା ମଧ୍ୟରୁ ଉତ୍କଳ ଦର୍ପଣ, ଉତ୍କଳଦୀପିକା ଏବଂ ସମ୍ବାଦ ବାହିକା ଅନେକ ବର୍ଷ ଧରି ପ୍ରକାଶ ପାଇଥିଲା । ସମ୍ବଲପୁର ହିତୈଷିଣୀ ପରି କେତେକ ସମ୍ବାଦପତ୍ର ମାଧ୍ୟମରେ ଆଧୁନିକ ସାହିତ୍ୟ ବିକାଶ ଲାଭ ସୁଯୋଗ ମଧ୍ୟ ପାଇଛି । ସେତେବେଳେ ଉତ୍କଳ ସାହିତ୍ୟାକାଶରେ ତିନିଜଣ ବରପୁତ୍ର ରାଧାନାଥ, ମଧୁସୂଦନ ଓ ଫକୀରମୋହନଙ୍କର ବହୁଲେଖା ପତ୍ରପତ୍ରିକା

ମାଧ୍ୟମରେ ପ୍ରକାଶ ପାଇଥିଲେ, ସମ୍ପାଦକ ଗୋଷ୍ଠୀଙ୍କର, ନାଟ୍ୟକାର ମାନଙ୍କର, ଐତିହାସିକ ଉପନ୍ୟାସ, ସରକାର ପ୍ରଭୃତିଙ୍କର ଲେଖା ମଧ୍ୟ ସେତେବେଳେର ଅନ୍ୟାନ୍ୟ ପତ୍ରିକା ମାଧ୍ୟମରେ ପ୍ରକାଶ ପାଇବାର ସୁଯୋଗ ପାଇଛନ୍ତି । ୧୮୯୮-୯୬ ମସିହାରେ ପୁରାତନ ଓ ଆଧୁନିକ ଭାବଧାରାର ବିତର୍କ ଉପରେ ବକୁଳ ଓ ଛନ୍ଦ ଠିକୁ ନାମରେ ଦୁଇଟି ପତ୍ରିକା ପ୍ରକାଶ ପାଇଥିଲା । ଯେଉଁ ପତ୍ରିକା ଦୁଇଟି ଦୀର୍ଘଦିନ ତିଷ୍ଠି ପାରି ନ ଥିଲେ ମଧ୍ୟ ଦୁଇଗୋଷ୍ଠୀ ସାହିତ୍ୟରେ ଅଭିନୂତନ ବିତର୍କର ପତ୍ରିକା ମାଧ୍ୟମରେ ଯେଉଁ ସଂଘର୍ଷ ସୃଷ୍ଟି ହୋଇଥିଲା ସାହିତ୍ୟାକାଶରେ ତାର ଅବଦାନ କୌଣସି ଗୁଣରେ କମ୍ ନୁହେଁ । ୧୮୯୭ ମସିହାରେ ବିଶ୍ୱନାଥ କରଙ୍କ ସମ୍ପାଦନାରେ ପ୍ରକାଶିତ "ଉତ୍କଳ ସାହିତ୍ୟ" ପତ୍ରିକା ଆଧୁନିକ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକ ମାଇଲ ଖୁଣ୍ଟ ହୋଇ ରହିଛି ।

ଏହାପରେ ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଜନସଚେତନତା ଏବଂ ଶିକ୍ଷିତ ସଂଖ୍ୟା କ୍ରମଶଃ ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ପାଠ୍ୟପୁସ୍ତକ ସଂଖ୍ୟା ବୃଦ୍ଧି ପାଇଲା । ଏହାଦ୍ୱାରା ଓଡ଼ିଆ ପାଠ୍ୟପୁସ୍ତକ ଓ ସାହିତ୍ୟର ବିକାଶ ଘଟିବା ସହିତ ପ୍ରକାଶନ କ୍ଷେତ୍ରରେ ଅଗ୍ରଗତି ଦେଖାଦେଲା । କିନ୍ତୁ ଅନ୍ୟାନ୍ୟ ରାଜ୍ୟଙ୍କ ସହ ତୁଳନାରେ ଓଡ଼ିଶାରେ ପୁସ୍ତକ ପ୍ରକାଶ ସେତେବେଳେ ଉତ୍ସାହଜନକ ନ ଥିଲା କି ବର୍ତ୍ତମାନ ମଧ୍ୟ ଉତ୍ସାହଜନକ ନୁହେଁ । ଏହାର ଅନେକ କାରଣ ଥିଲେ ମଧ୍ୟ, ଦୁଇଟି ମୁଖ୍ୟ କାରଣ ହେଲା— ପାଠକ ସଂଖ୍ୟା କମ୍ ଓ ଆଧୁନିକ ଶୈଳୀକର୍ଷକ ପ୍ରକାଶ ପରମ୍ପରାର ଅଭାବ । ଏହି ଦୁଇଟି ମୁଖ୍ୟ କାରଣକୁ କେନ୍ଦ୍ର କରି ଆହୁରି ଅନେକ କ୍ଷୁଦ୍ର କ୍ଷୁଦ୍ର ଅଭାବ ଅସୁବିଧା ବି ଦର୍ଶାଯାଇ ପାରେ । କିନ୍ତୁ ଭାରତର ଯେଉଁ କେତେକ ରାଜ୍ୟରେ ପୁସ୍ତକ ପ୍ରକାଶନର ବହୁଳ ପ୍ରସାର ଘଟିଛି । ସେ ସବୁ ରାଜ୍ୟ ସହିତ ତୁଳନା କଲେ ଦେଖାଯାଏ ଯେ ଓଡ଼ିଶାରେ ପାଠକ ସଂଖ୍ୟା କମ୍ । ତା ସହିତ ଆଧୁନିକ ରୁଚିସମ୍ପନ୍ନ ପ୍ରକାଶନ ଶୈଳୀର ଅଭାବ ମଧ୍ୟ ପୁସ୍ତକ ପ୍ରସାର କ୍ଷେତ୍ରରେ ଅନ୍ୟ ଏକ ପ୍ରତିବନ୍ଧକ । ଏଦୁଇଟିର ଅଭାବ ସହିତ ଆମର ଅର୍ଥନୈତିକ ଅସ୍ଥିରତା ପୁସ୍ତକ ପ୍ରକାଶ କ୍ଷେତ୍ରରେ ଅନ୍ୟ ଏକ ଅନ୍ତରାୟ ।

ଏ ସବୁ ପ୍ରତିକୂଳ ପରିସ୍ଥିତି ସତ୍ତ୍ୱ ଓଡ଼ିଶାର କେତେକ ପୁସ୍ତକ ପ୍ରକାଶକ ପ୍ରକାଶନ କ୍ଷେତ୍ରରେ ସେମାନଙ୍କ ଉଦ୍ୟମକୁ ଏପର୍ଯ୍ୟନ୍ତ ବଞ୍ଚାଇ ରଖିଛନ୍ତି । ଆଧୁନିକ ଶିକ୍ଷାର ପ୍ରସାର ସଙ୍ଗେ ସଙ୍ଗେ ଓଡ଼ିଶାର କେତେକ ସହରରେ କଳାସାହିତ୍ୟ ଚର୍ଚ୍ଚାର ଆଦର ବୃଦ୍ଧି ପାଉଛି । ଏହାର ସୁଯୋଗ ନେଇ ସହରମାନଙ୍କରେ କ୍ରମଶଃ ନୂତନ ପ୍ରକାଶନ ସଂସ୍ଥାର ସଂଖ୍ୟା ଯେପରି ବଢ଼ିବାରେ ଲଗିଛି ସେହିପରି କେତେକ ପୁରାତନ ସଂସ୍ଥାର ବିଲୟ ବି ଘଟୁଛି । ଅଷ୍ଟାଦଶ ଶତକର ଶେଷ ଦ୍ୱିତୀୟାର୍ଦ୍ଧ ଏବଂ ଊନବିଂଶ ଶତକର ପ୍ରଥମ ତିରିଶବର୍ଷ ମଧ୍ୟରେ ଯେଉଁ କେତେକ ମୁଦ୍ରାଯନ୍ତ୍ର ସ୍ଥାପିତ ହୋଇ ତତ୍‌କାଳୀନ ଉତ୍କଳର ଗୌରବ, କଳା ସଂସ୍କୃତିର ପ୍ରସାର ସଙ୍ଗେ ସଙ୍ଗେ ଉତ୍କଳୀୟଙ୍କ ମନରେ ନବଜୀବନ ଗଠନର ସୂତ୍ରପାତ କରିଥିଲେ, ସେଗୁଡ଼ିକ ମଧ୍ୟରୁ ଅନେକର ସତ୍ତା କାଳର କରାଳ ଗର୍ଭରେ ହଜିଗଲେ ବି, ଇତିହାସ ସେମାନଙ୍କର ଅବିସ୍ମରଣୀୟ ଅବଦାନକୁ ଭୁଲି ଯାଇନି ।

ସ୍ୱାଧୀନତାର ପରବର୍ତ୍ତୀ କାଳରେ ଆମ ରାଜ୍ୟରେ ପ୍ରକାଶନ ସଂସ୍ଥାର ଅଧିକ ପ୍ରସାର ଘଟିଲା । କେତେକ ବ୍ୟବସାୟିକ ଦୃଷ୍ଟିରୁ ମୁଦ୍ରାଯନ୍ତ୍ର ପ୍ରତିଷ୍ଠା କଲେ । ଯେଉଁମାନେ ସମାଜ କଲ୍ୟାଣ ଏବଂ ନିଜର ରୁଚି ଦୃଷ୍ଟିରୁ ମୁଦ୍ରାଯନ୍ତ୍ର ପ୍ରତିଷ୍ଠା କରିଥିଲେ ସେମାନଙ୍କ ମଧ୍ୟରୁ ଗୋକୁଳଚନ୍ଦ୍ର କର ଅନ୍ୟତମ ।

ଶ୍ରୀ କର ୧୯୧୨ ମସିହା ଜୁଲାଇ ମାସରେ କଟକ ଜିଲ୍ଲା ଅନ୍ତର୍ଗତ ସାଲେପୁର ନିକଟସ୍ଥ ଚମ୍ପତି ଗ୍ରାମରେ ଏକ ସମ୍ଭ୍ରାନ୍ତ ଶିକ୍ଷିତ କୁଳୀନ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ଗୌରାଙ୍ଗଚରଣ କର । ସେ ସମୟରେ ସେ F. A. ଓ କାବ୍ୟତୀର୍ଥ ପାସ କରି Town Victoria High School ( ବର୍ତ୍ତମାନର ଭକ୍ତମଧୁ ବିଦ୍ୟାପୀଠ)ର ପ୍ରଧାନ ସଂସ୍କୃତ ଶିକ୍ଷକ ଦାୟିତ୍ୱରେ ଥିଲେ । ତାଙ୍କର ଜେଜେ ୰ ଶମ୍ଭୁନାଥ କର ୧୮୭୨ ମସିହାରେ ଏନ୍‌ଟ୍ରାନସ ପରୀକ୍ଷାରେ ଉତ୍ତୀର୍ଣ୍ଣ

ହୋଇ ଗୋଟିଏ Steamer Companyର ମ୍ୟାନେଜର ଥିଲେ । ସେତେବେଳେ ଆଜିକା ପରି ସଡ଼କପଥ କିମ୍ବା ରେଳପଥର ବିକାଶ ଘଟି ନଥିଲା । ଲୋକ କଲିକତା ପ୍ରଭୃତି ଦୂର ସ୍ଥାନକୁ ଯିବାପାଇଁ ହେଲେ ଜଳପଥରେ Steamerରେ ଯାତ୍ରା କରୁଥିଲେ । ସେତେବେଳେ ଗୋଟିଏ ପଟରେ ଚାନ୍ଦବାଲିଠାରୁ କଟକ ଏବଂ ଅନ୍ୟପଟେ ଚାନ୍ଦବାଲିଠାରୁ କଲିକତା ପର୍ଯ୍ୟନ୍ତ Steamer Service ଥିଲା । ଗୋକୁଳଚନ୍ଦ୍ର କରଙ୍କ ପିତାମହ ଶ୍ରୀ ବୈଦ୍ୟନାଥ କର ଏହି Steamer Companyର ମ୍ୟାନେଜର ଥିଲେ ।

ପ୍ରକାଶକ ଶ୍ରୀଯୁକ୍ତ ଗୋକୁଳଚନ୍ଦ୍ର କର ନିଜ ପରିବାର ମଧ୍ୟରେ ଶିକ୍ଷାର ଆଲୋକ ପାଇଥିଲେ । ସେ ବାଲ୍ୟାବସ୍ଥାରେ ନିଜ ଗ୍ରାମ ଚମ୍ପାଖଣ୍ଡରେ ନିମ୍ନ ପ୍ରାଥମିକ ସ୍କୁଲ ଓ ପରେ ନିକଟବର୍ତ୍ତୀ ପଦ୍ମପୁର ଉଚ୍ଚ ପ୍ରାଥମିକ ସ୍କୁଲରେ ଶିକ୍ଷାଲାଭ କରିଥିଲେ । ସେଠାରୁ ପାଶ୍ କରି ସେ Victoria School (ଭିକ୍ଟୋରିଆ ବିଦ୍ୟାଳୟ)ରେ ନାମ ଲେଖାଇ ସେଠାରୁ ୧୯୨୮ ମସିହାରେ ମାଟ୍ରିକ୍ ପାସ୍ କଲେ । ଭିକ୍ଟୋରିଆ ବିଦ୍ୟାପୀଠରେ ଅଧ୍ୟୟନ କଲାବେଳେ କଣ୍ଟେଶ୍ବରମୋହନ ଜୁଆରଦାର୍ ରାଧାରମଣ ମଲ୍ଲିକ ପ୍ରମୁଖ ପ୍ରବୀଣ ସ୍ୱଦେଶପ୍ରେମୀ ଓ ଜାତୀୟତାବାଦୀ ଶିକ୍ଷକମାନଙ୍କ ପ୍ରଭାବ ତାଙ୍କ ଉପରେ ପଡ଼ିଥିଲା ।

ସେତେବେଳେ ସାରା ଦେଶରେ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଇଂରେଜ ସରକାର ବିରୁଦ୍ଧରେ ସତ୍ୟାଗ୍ରହ ଆରମ୍ଭ ହୋଇ ଯାଇଥାଏ । ଉତ୍କଳମଣି ଗୋପବନ୍ଧୁ ଭଗୀରଥ ପରି ସେହି ସତ୍ୟାଗ୍ରହର ଜାହ୍ନବୀଧାରା ଓଡ଼ିଶାରେ ପ୍ରବାହିତ କରାଇ ସାରିଥିଲେ । ଗାନ୍ଧୀଜୀଙ୍କ ଆଦର୍ଶ ଏବଂ ଗୋପବନ୍ଧୁଙ୍କ ପ୍ରଚେଷ୍ଟାରେ ସେତେବେଳେ ବହୁ ସ୍କୁଲ ଛାତ୍ର ସ୍କୁଲ ଛାଡ଼ି ଇଂରେଜ ସରକାରଙ୍କ ବିରୁଦ୍ଧରେ ସତ୍ୟାଗ୍ରହରେ ଯୋଗ ଦେଇ ଦେଶ ପାଇଁ କାର୍ଯ୍ୟ କରିଥିଲେ । ଛାତ୍ରାବସ୍ଥାରେ ଗୋକୁଳବାବୁଙ୍କ ମନ ସେଥିପ୍ରତି ସ୍ୱତଃ ଆକୃଷ୍ଟ ହୋଇଥିଲେ ମଧ୍ୟ ସେ ପ୍ରତ୍ୟକ୍ଷ ଭାବରେ ସତ୍ୟାଗ୍ରହରେ ଯୋଗ ନ

ଦେଇ ଦେଶରେ ସତ୍ୟାଗ୍ରହୀମାନଙ୍କୁ ଆହ୍ୱାନ କରୁଥିଲେ । ବିଦେଶୀ ବସ୍ତ୍ର ବର୍ଜନ କରି ଗ୍ରାମବାସୀଙ୍କୁ ସେ ସୂତାକାଟି ଖଦଡ଼ ପିନ୍ଧା ଆରମ୍ଭ କରିଥିଲେ ।

୧୯୨୮ ମସିହାରେ ସେ ପଢ଼ିବା ପାଇଁ ରେଭେନ୍ସା କଲେଜରେ I. Sc. ରେ ନାମ ଲେଖାଇଲେ । ସେତେବେଳେ ଗୋକୁଳ ବାବୁଙ୍କ ପିତା କାଠଯୋଡ଼ି କୂଳର କାଠଯୋଡ଼ୀ ହଷ୍ଟେଲର ଦାୟିତ୍ୱରେ ଥିଲେ । ଶ୍ରୀଯୁକ୍ତ ଗୋକୁଳ ଚନ୍ଦ୍ର ମଧ୍ୟ ପିତାଙ୍କ ନିକଟରେ ରହୁଥିଲେ । କିଛି ବର୍ଷ ପୂର୍ବରୁ ଉତ୍କଳମଣି ଗୋପବନ୍ଧୁ ପୁରୀ ଜିଲ୍ଲାର ସତ୍ୟବାଦୀ ବକୁଳବନ ମୁକ୍ତ ଆକାଶ ତଳେ ଋଷିଯୁଗ ଆଦର୍ଶରେ ସେହି ବନ ବିଦ୍ୟାଳୟ ଆରମ୍ଭ କରିଥିଲେ, କିଛିବର୍ଷ ଖୁବ୍ ଭଲ ଭାବରେ ଚାଲିଲା । ପରେ କେତେକ ଅସୁବିଧା ବଶତଃ ସେହି ବିଦ୍ୟାଳୟ ଭାଙ୍ଗିଗଲା । ବକୁଳବନ ବିଦ୍ୟାଳୟ ଭାଙ୍ଗିଗଲା ପରେ ସେତେବେଳର ଛାତ୍ର ଉଦୟନାଥ ଷଡ଼ଙ୍ଗୀ, ଉତ୍କଳଶ୍ୟାମ ବିଧାଶ୍ୟାମ, ପଦ୍ମଚରଣ ଦାସ ପ୍ରମୁଖ ଆସି କାଠଯୋଡ଼ୀ ହଷ୍ଟେଲରେ ରହିଲେ । ସେତେବେଳ ବିଭିନ୍ନ ଅଞ୍ଚଳରୁ ଛାତ୍ରମାନେ ଆସି ହଷ୍ଟେଲରେ ରହିବା ଫଳରେ କାଠଯୋଡ଼ୀ ହଷ୍ଟେଲ ବିଭିନ୍ନ ବିଷୟ ଆଲୋଚନାର ଏକ ପୀଠସ୍ଥଳୀ ହୋଇ ପଡ଼ିଲା । ସେଠାରେ ଶରୀର ଚର୍ଚ୍ଚା, ସାହିତ୍ୟ ଚର୍ଚ୍ଚାର ଏକ ନୂତନ ବାତାବରଣର ସୃଷ୍ଟି ହେଲା । ସେତେବେଳେ ଶ୍ରୀଯୁକ୍ତ ଗୋକୁଳଚନ୍ଦ୍ର ଏମାନଙ୍କ ସଂସ୍ପର୍ଶରେ ଆସି ସାହିତ୍ୟ ଆଲୋଚନା ପ୍ରତି କ୍ରମେ ଆକୃଷ୍ଟ ହେଲେ । ସେତେବେଳେ କାଠଯୋଡ଼ୀ ହଷ୍ଟେଲରୁ 'ତପୋଧୂଳା' ନାମରେ ଖଣ୍ଡିଏ ହାତଲେଖା ମାଗାଜିନ୍ ବାହାରୁଥିଲା । ତା'ପରେ ପରେ କନିଷ୍ଠ ଛାତ୍ରମାନଙ୍କ ନିମନ୍ତେ 'ଚପଳା' ନାମରେ ଆଉ ଗୋଟିଏ ମାଗାଜିନ୍ ଆତ୍ମପ୍ରକାଶ କଲା, ଗୋକୁଳ ବାବୁ ସାହିତ୍ୟ ଚର୍ଚ୍ଚାରେ ବିଶେଷ ଭାବରେ ମନୋନିବେଶ କରୁଥିବାରୁ, ଏହି ନୂତନ ପତ୍ରିକା 'ଚପଳା'ର ସମ୍ପାଦନା ଦାୟିତ୍ୱ ତାଙ୍କ ଉପରେ ପଡ଼ିଲା । ତାଙ୍କ ସମ୍ପାଦନାରେ କିଛି ସମୟ ପାଇଁ ଏହି ପତ୍ରିକାଟି ବେଶ୍ ସୁରୁଚି ଭାବରେ ପ୍ରକାଶିତ ହେଲା ।

ସେତେବେଳେ ଏଇ ହଷ୍ଟେଲର ପିଲାମାନେ ଅବସର ସମୟରେ ମନୋରଞ୍ଜନ ପାଇଁ ନାଟକ ଆଦି ଅଭିନୟ କରି ଓ ଅଭିନୟ ରଙ୍ଗମଞ୍ଚ ପ୍ରତି

ଲୋକମାନଙ୍କ ଦୃଷ୍ଟି ଆକର୍ଷଣ କରୁଥିଲେ । ଗୋକୁଳବାବୁ ଏହି ହଷ୍ଟେଲରେ ଥିଲାବେଳେ ସେମାନେ 'ହରିଶ୍ଚନ୍ଦ୍ର' ନାଟକ ମଞ୍ଚସ୍ଥ କରିଥିଲେ । ଏହି ନାଟକର ହରିଶ୍ଚନ୍ଦ୍ର ଭୂମିକାରେ ଅଭିନୟ କରିଥିଲେ ଡାକ୍ତର ହରଣାରାମ୍, ଏବଂ ଗୋକୁଳବାବୁ ଅଭିନୟ କରିଥିଲେ ଋଷି ବାଳକ ଭାବରେ । ଗୋକୁଳବାବୁ ଯେ କାଠଯୋଡ଼ୀ ହଷ୍ଟେଲରେ ଥିଲାବେଳେ ଅନ୍ୟମାନଙ୍କ ପ୍ରଭାବରେ ରଙ୍ଗମଞ୍ଚ ପ୍ରତି ଆକୃଷ୍ଟ ହୋଇଥିଲେ ତା ନୁହେଁ; ପିଲାଦିନୁ ତାଙ୍କର ଅଭିନୟ ପ୍ରତି ଅନୁରାଗ ଥିଲା । ମାଟ୍ରିକ୍ ପାସ୍ କରି ସେ ଯେଉଁ-ବେଳେ ଗାଁରେ ରହୁଥିଲେ ସେତେବେଳେ ଗାଆଁ ପିଲାମାନଙ୍କୁ ଏକାଠି କରି ଯାତ୍ରା କରିବାର ତାଙ୍କର ଗୋଟିଏ ଝୁଙ୍କ୍ ଥିଲା । ତେଣୁ କାଠଯୋଡ଼ୀ ହଷ୍ଟେଲରେ ରହିବା ସମୟରେ ଅଭିନୟ ପ୍ରତି ତାଙ୍କର ଆଗ୍ରହ ବଳବତ୍ତର ହୋଇ ପଡ଼ିଲା । କିନ୍ତୁ ଗୋକୁଳବାବୁଙ୍କର କଲେଜ ଛାତ୍ରଜୀବନ ଖୁବ୍ ସୀମିତ ଥିଲା । ୧୯୨୮ ମସିହାରେ ମାତ୍ର ୪୨ ବର୍ଷ ବୟସରେ ଆକସ୍ମିକ ଭାବରେ ତାଙ୍କର ପିତୃ ବିୟୋଗ ଘଟିବାରୁ ସେ ଉଚ୍ଚ ଶିକ୍ଷାରୁ ବଞ୍ଚିତ ହେଲେ । ଏପରି କି ସେ ଆଇ. ଏସ୍-ସି. ପରୀକ୍ଷା ଦେଇ ନ ପାରି କଲେଜରୁ ବିଦାୟ ନେଲେ ।

ପିତୃ ବିୟୋଗ ପରେ କିଛିକାଳ ଲକ୍ଷ୍ୟହୀନ ଭାବରେ ଏଣେ ତେଣେ ବୁଲି ବୁଲି କଲେ । ଗାଆଁକୁ ଆସି କଣ କରିବେ କିଛି ସ୍ଥିର କରି ନ ପାରି ୧୯୩୧ ପର୍ଯ୍ୟନ୍ତ ଗାଆଁର କୃଷି ଧନ୍ଦାରେ ଲାଗିଲେ । କିନ୍ତୁ କୃଷି କାର୍ଯ୍ୟରେ ଆବଶ୍ୟକ ମେଣ୍ଟିବାର ଆଶା ନ ଥିବାରୁ, ସେ ସରକାରୀ ଚାକିରୀ ପାଇଁ ମନ ବଳାଇଲେ । ନିଜର ପ୍ରଚେଷ୍ଟା ଫଳରେ ସେ ଖଡ଼ଗପୁର ଏସ୍. ପି. ଅଫିସରେ ୧୯୩୨ ମସିହା ଜାନୁଆରୀ ମାସରେ ନିଯୁକ୍ତ ପାଇ ସେଠାରେ ସାଢ଼େ ତିନିବର୍ଷ କାର୍ଯ୍ୟ କଲେ । ସରକାରୀ ଚାକିରୀରେ ଅଫିସରେ ବିଭିନ୍ନ ଧନ୍ଦାରେ ବ୍ୟସ୍ତ ଥାଇ ମଧ୍ୟ ତାଙ୍କ ମନ ଭିତରର ସାହିତ୍ୟାନୁରାଗ ମରିଯାଇ ନଥିଲା । ଖଡ଼ଗପୁରରେ ଥାଇ ସେ ଓଡ଼ିଆ ସାହିତ୍ୟର ବିକାଶ ଏବଂ ଚର୍ଚ୍ଚା ପାଇଁ ଅନୁକୂଳ ପରିବେଶ ଖୋଜୁଥିଲେ । ସେତେବେଳେ ଖଡ଼ଗପୁରରେ ମଧ୍ୟ ଅନେକ ଓଡ଼ିଆ ରହୁଥିଲେ । ତେଣୁ

ସେଠାରେ ଓଡ଼ିଆ ସାହିତ୍ୟ ବିକାଶ ପାଇଁ ନିଜ ଉଦ୍ୟମରେ 'କଳିଙ୍ଗ କେତନ' ନାମରେ ଗୋଟିଏ ଓଡ଼ିଆ ପତ୍ରିକା ବାହାର କଲେ । କିନ୍ତୁ କିଛିବର୍ଷ ପରେ ସେଠାରୁ ତାଙ୍କର ବିହାରର ମାନଭୂମ ଜିଲ୍ଲା ବଦଳି ହେବାରୁ ସେ ପତ୍ରିକା ସହିତ ତାଙ୍କର ସମ୍ପର୍କ କ୍ରମଶଃ ତୁଟିଗଲା । ସେଠାରେ ରଙ୍ଗମଞ୍ଚ କିମ୍ବା ସାହିତ୍ୟ ଚର୍ଚ୍ଚାର କୌଣସି ସୁଯୋଗ ସେ ପାଇଲେ ନାହିଁ ।

ତାପରେ ୧୯୩୭ ମସିହାରେ ସମ୍ବଲପୁରକୁ ବଦଳି ହେବା ପରେ ତାଙ୍କ ମନରେ ଲୁଚିରହିଥିବା ଅଭିନୟ ଲିପସା ପୁଣି ଜାଗ୍ରତ ହେଲା । ସେ ରଙ୍ଗମଞ୍ଚ ସହିତ ଘନିଷ୍ଠ ଭାବରେ ଜଡିତ ହୋଇ ପଡ଼ିଲେ । ସେତେବେଳେ ସମ୍ବଲପୁରର Police Inspector ଶ୍ରୀ ଅତୁଲ ମିତ୍ରଙ୍କ ସାଙ୍ଗକୁ ଚିତ୍ରକାର ଗୋପାଳ କାନୁନ୍‌ଗୋ ତାଙ୍କୁ Paintingରେ ସାହାଯ୍ୟ କରୁଥିଲେ । ଗୋକୁଳବାବୁ ସେଠାରେ ଦସ୍ୟୁ, ଅସବର୍ଣ୍ଣା, ଗୋବିନ୍ଦ ବିଦ୍ୟାଧର ଇତ୍ୟାଦି କେତେକ ନାଟକରେ ଅଭିନୟ କଲେ । ଗୋକୁଳ-ବାବୁ ବଙ୍ଗଳାରେ ଭଲ ଲେଖାପଢ଼ା କରିପାରୁଥିଲେ । ସେ ସେତେବେଳେ ବଙ୍ଗଳା ନାଟକ ଅନୁବାଦ କରି ସେଥିରେ ବିଭିନ୍ନ ଭୂମିକାରେ ମଧ୍ୟ ସଫଳ ଭାବରେ ଅଭିନୟ କରିଥିଲେ ।

ସମ୍ବଲପୁରରେ କିଛିବର୍ଷ ରହିବା ପରେ ସେ କଟକର O. M.P. କାର୍ଯ୍ୟାଳୟକୁ ଏକାଉଣ୍ଟାଣ୍ଟ ଭାବରେ ବଦଳି ହୋଇ ଆସିଲେ । ସେତେବେଳେ ଦ୍ୱିତୀୟ ମହାଯୁଦ୍ଧ ଲାଗିଥାଏ । ସେହି ସମୟରେ କଟକ ଜିଲ୍ଲାର କୁଜଙ୍ଗ ଅଞ୍ଚଳରେ ଜାପାନୀ ବୋମା ପଡ଼ିବା ଫଳରେ ଲୋକଙ୍କ ମନରେ ଯୁଦ୍ଧର ଆତଙ୍କ ଦେଖା ଯାଇଥାଏ । ଲୋକମାନେ ସହରଛାଡ଼ି ଗାଁକୁ ଚାଲି ଯାଉଥାଆନ୍ତି । ସେ ସମୟରେ ଗୋକୁଳବାବୁ କଟକରେ ରହି O. M. P. କାର୍ଯ୍ୟାଳୟରେ ନିଜର କ୍ଷୁଦ୍ର ପରିସର ମଧ୍ୟରେ ଜାତି ପାଇଁ ନିଜର କର୍ତ୍ତବ୍ୟ ସମ୍ପାଦନା କରୁଥିଲେ । କିଛିଦିନ ପରେ ତାଙ୍କର ଅନୁଗୁଳ ଟ୍ରେନିଂ କଲେଜକୁ ବଦଳି ହେଲା । ସେଠାରେ ସେ ଓଡ଼ିଶାର ପ୍ରସିଦ୍ଧ ନାଟ୍ୟକାର କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ

"ପରିବର୍ତ୍ତନ" ନାଟକରେ ପ୍ରଥମ ଅଭିନୟ କଲେ । ସେଠାରେ କବିଚନ୍ଦ୍ରଙ୍କ ସହିତ ତାଙ୍କର ପ୍ରଥମ ପରିଚୟ ହେଲା । ତା'ପରେ ପରେ ସେ ଓଡ଼ିଶାର ବହୁ ବିଶିଷ୍ଟ ନାଟ୍ୟକାରଙ୍କ ସଂସ୍ପର୍ଶରେ ଆସି ଅଭିନୟ କ୍ଷେତ୍ରରେ ଆହୁରି ଉତ୍ସାହିତ ହେଲେ । "ଦସ୍ୟୁ" ନାଟକର ରାଜା ଅଭିନୟ ଫଳରେ ସେ କାର୍ତ୍ତିକ ଘୋଷଙ୍କ ସହିତ ପରିଚିତ ହେଲେ ।

୧୯୪୪ ମସିହାରେ କଟକକୁ ବଦଳି ହୋଇ ଆସିବା ପରେ ଅଭିନୟ କ୍ଷେତ୍ରରେ ସେ ପ୍ରଶସ୍ତ ସୁଯୋଗ ପାଇଲେ । ନିଜର କାର୍ଯ୍ୟଦକ୍ଷତା ବଳରେ ୧୯୫୭ ମସିହାରେ କଟକର Iuspector General ଅଫିସକୁ Head Assistant ରୂପେ ତାଙ୍କର ପଦୋନ୍ନତି ହେଲା । ସେହି ସମୟରେ ସେ "Police Ministerial Association" ଗଠନ କରି ତାର Secretary ଦାୟିତ୍ୱରେ ରହିଥିଲେ । ସେତେବେଳକୁ ସେ ୭ଟି ସନ୍ତାନର ଜନକ । ପରିବାରର ସମସ୍ତ ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ ଥିବାରୁ ତାଙ୍କର ସୀମିତ ଆୟରେ ଏତେବଡ଼ ପରିବାର ସୁଚାରୁରୂପେ ଚଳାଇବା ତାଙ୍କ ପକ୍ଷରେ କଷ୍ଟକର ହୋଇ ଉଠୁଥିଲା । ଏହି ସମୟରେ ଉତ୍କଳ ବୁକ୍ ଏଜେନ୍ସିର ପ୍ରତିଷ୍ଠାତା ଶ୍ରୀ ବ୍ରଜବନ୍ଧୁ ଦାସଙ୍କ ସହିତ ତାଙ୍କର ଘନିଷ୍ଠତା ହେଲା ଏବଂ ତାଙ୍କରି ଆଦର୍ଶରେ ସେ ବହି ବ୍ୟବସାୟ ପ୍ରତି ଆକୃଷ୍ଟ ହେଲେ । ଅନ୍ୟତମ ପ୍ରକାଶକ ଘନଶ୍ୟାମ ମହାନ୍ତିଙ୍କ ସହିତ ମଧ୍ୟ ତାଙ୍କର ଆତ୍ମୀୟତା ଜନ୍ମିଲା ଏବଂ ଗୋକୁଳବାବୁ ପୁସ୍ତକ ଦୋକାନ ବା ପୁସ୍ତକ ପ୍ରକାଶ କ୍ଷେତ୍ରରେ କିଛି କରି ପାରିବେ—ଏ ଧାରଣା ମଧ୍ୟ ତାଙ୍କ ମନରେ ଘନଶ୍ୟାମ ବାବୁ ବଦ୍ଧମୂଳ କରାଇଲେ । ସେତେବେଳେ ଓଡ଼ିଆ ଭାଷାରେ ପୁସ୍ତକ ପ୍ରକାଶ ତଥା ପ୍ରଚାର ପୂର୍ବ ଅପେକ୍ଷା ଯଥେଷ୍ଟ ବୃଦ୍ଧି ପାଉଥାଏ । ଠିକ୍ ଏହି ସମୟରେ ବାଲୁବଜାରରେ ଗୋଟିଏ ଖାଲି ଘର ମିଳିଲା ଏବଂ ଘନବାବୁଙ୍କ ପ୍ରେରଣାରେ ଗୋକୁଳବାବୁ ତାଙ୍କ ସ୍ତ୍ରୀଙ୍କ ନାମରେ ମାତ୍ର ସ୍ୱଳ୍ପ ପଚିଶଟଙ୍କା ମୂଳ ଧନରେ ଗୋଟିଏ ବହି ଦୋକାନ ଆରମ୍ଭ କଲେ । କିନ୍ତୁ ନିଜେ ସରକାରୀ ଚାକିରୀ କରୁଥିବାରୁ ସେ ସବୁବେଳେ ବହି ଦୋକାନରେ ଭଲମନ୍ଦ ବୁଝାସୁଝା କରିପାରୁ ନ ଥିଲେ । ତେଣୁ ତାଙ୍କ ଭାଇ ପ୍ରଥମେ ବହି ଦୋକାନ ଦାୟିତ୍ୱରେ

କହିଲେ । କିନ୍ତୁ ବର୍ଦ୍ଧକ ପରେ ସେ ଆଉ ଦୋକାନ ବିଷୟ ନ ବୁଝିବାରୁ ଲୋକ ରଖି ସେ ୭।୮ ବର୍ଷ ପର୍ଯ୍ୟନ୍ତ ଦୋକାନ କାର୍ଯ୍ୟ ଚଳାଇଲେ । ନିଜେ ବହି ଦୋକାନ ବିଷୟ ବୁଝାଶୁଝା ନ କରିବାରେ ଅସୁବିଧା ଦେଖାଦେବାରୁ ୨୫ ବର୍ଷ ଚାକିରି ପରେ ୧୯୬୦ ମସିହାରେ ଚାକିରି ତ୍ୟାଗ କରି ସ୍ୱେଚ୍ଛାରେ ନେଇ ସେ ସମ୍ପୂର୍ଣ୍ଣଭାବରେ ସେ ବହିଦୋକାନ ଦାୟିତ୍ୱ ନେଲେ ।

ସମୟ କ୍ରମେ ପୁସ୍ତକ ପ୍ରକାଶ କରିବାର କଳ୍ପନା ତାଙ୍କ ମନରେ ସ୍ଥାନ ପାଇଥିଲା । ସେ ପ୍ରଥମେ ଉମେଶଚନ୍ଦ୍ର ପାଣିଗ୍ରାହୀଙ୍କର 'ଶାଳବନ ଡାକେ' ବହି ଛାପିଲେ । ଏହା ଖଣ୍ଡି ପ୍ରକାଶ ପାଇବା ପରେ ତାଙ୍କ ମନରେ ପୁସ୍ତକ ପ୍ରକାଶର ଭାବ ଆହୁରି ଗଭୀରତର ହେଲା ଏବଂ ସେ ଆସ୍ତେ ଆସ୍ତେ ବିଭିନ୍ନ ଲେଖକଙ୍କର ପୁସ୍ତକ ପ୍ରକାଶ କରିବାପାଇଁ ଆଗ୍ରହୀ ହେଲେ । ସେ ଭଗବାନ ପତିଙ୍କର କେତେକ ଗଳ୍ପ ପୁସ୍ତକ ସହିତ ଶିକ୍ଷା ବିଭାଗର କାହ୍ନୁଚରଣ ମହାନ୍ତିଙ୍କ 'ଶିକ୍ଷକ ସହାୟକ' ପୁସ୍ତକମାନ ଏବଂ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ 'ଭାତ, ଜୟଦେବ, ଅଭିଯାନ, ଚର୍ଚ୍ଚା, ଧାରଳାଦାସ, ରକ୍ତମନ୍ଦାର, ମାଳଣି, ସ୍ୱର୍ଣ୍ଣ ଯୁଗର ଉତ୍କଳ, ଅତିବଡ଼ ଜଗନ୍ନାଥ ଦାସ, ଚମ୍ପୂ ପ୍ରବେଶ, କବିଚନ୍ଦ୍ର ଗୀତାବଳୀ' ଇତ୍ୟାଦି ପ୍ରକାଶ କଲେ । ପରବର୍ତ୍ତୀ ସମୟରେ ସେ ବ୍ୟୋମକେଶ ତ୍ରିପାଠୀ, ଭୁବନେଶ୍ୱର ମହାପାତ୍ର, ନୀଳକଣ୍ଠ ମିଶ୍ର, ବ୍ରଜମୋହନ ମହାନ୍ତି, ମନୋରଞ୍ଜନ ଦାସ, ବିଶ୍ୱଜିତ ଦାସ, ଶାରଦା ପ୍ରସନ୍ନ ନାୟକ, ଭଞ୍ଜକିଶୋର ପଟ୍ଟନାୟକ ଇତ୍ୟାଦିଙ୍କର ବହୁ ବହିର ପ୍ରକାଶକ ଭାବରେ ଖ୍ୟାତି ଅର୍ଜ୍ଜନ କରିଛନ୍ତି ।

ପ୍ରକାଶକ ଗୋକୁଳ ବାବୁ କେତେକ ଶିଶୁ ସାହିତ୍ୟ ପୁସ୍ତକ ପ୍ରକାଶ କରି ଶିଶୁ ସାହିତ୍ୟକୁ ମଧ୍ୟ ପରିପୁଷ୍ଟ କରିଛନ୍ତି । ଚନ୍ଦ୍ରଧର ମହାପାତ୍ରଙ୍କ ଲିଖିତ ଏବଂ କେନ୍ଦ୍ର ସରକାରଙ୍କ ଦ୍ୱାରା ପୁରସ୍କୃତ ପ୍ରଥମ ଓଡ଼ିଆ ଶିଶୁସାହିତ୍ୟ "ବାଘମାମୁଁର ଚଟଶାଳୀ" ସେ ପ୍ରକାଶ କରିଛନ୍ତି । ଗୋକୁଳ ବାବୁ ନିଜେ ମଧ୍ୟ କେତେଖଣ୍ଡ ବହି ପିଲାଙ୍କ ପାଇଁ ଲେଖିଛନ୍ତି । ତା ଭିତରୁ "ହରିବଂଶ କଥା" ଓ "ମହାଭାରତ କଥା" ଶିଶୁସାହିତ୍ୟ ପୁରସ୍କାର ପାଇବାର ସୁଯୋଗ ଲାଭ କରିଛି । ସେ ପ୍ରକାଶନ କାର୍ଯ୍ୟ ଆରମ୍ଭ କଲା ଦିନଠାରୁ ଆଜି ପର୍ଯ୍ୟନ୍ତ ପ୍ରାୟ ତିନିଶହ ପୁସ୍ତକ ପ୍ରକାଶ କରିସାରିଲେଣି ।

ଗୋକୁଳ ବାବୁ ଜଣେ ପ୍ରକାଶକ ଭାବରେ ସମସ୍ତଙ୍କ ନିକଟରେ ଅଧିକ ଭାବରେ ପରିଚିତ ହେଲେହେଁ ଅନ୍ୟାନ୍ୟ କ୍ଷେତ୍ରରେ ତାଙ୍କର ଅବଦାନ ନଗଣ୍ୟ ନୁହେଁ । ସେ ଜଣେ ମଞ୍ଚଶିଳ୍ପୀ ଭାବରେ ଯେତିକି ପରିଚିତ, ଜଣେ ଓଡ଼ିଆ ଚଳଚ୍ଚିତ୍ର ଶିଳ୍ପୀ ଭାବରେ ତାଠୁଁ ଅଧିକ ଜଣାଶୁଣା । ସେ ୧୯୬୪ ମସିହାରେ ପ୍ରଥମେ 'ନାରୀ' ଚଳଚ୍ଚିତ୍ରରେ ଅଭିନୟ କରିଥିଲେ । ତାପରେ ୧୯୭୪ ମସିହାରେ 'କନକଲତା' ଏବଂ ୧୯୭୬ ମସିହାରେ 'କୃଷ୍ଣ ସୁଦାମ' ଚଳଚ୍ଚିତ୍ରରେ ଅଭିନୟ କରିଛନ୍ତି । ତା ଛଡ଼ା ମୁକ୍ତିଲାଭ କରିବାକୁ ଥିବା "ଠାକୁର ସାକ୍ଷୀରେ" ମଧ୍ୟ ସେ ଅଭିନୟ କରିବାକୁ ଅଙ୍ଗୀକୃତ । ଏହାଛଡ଼ା କଟକ କେନ୍ଦ୍ରର ଉପଗ୍ରହ ଟେଲିଭିଜନ ନାଟକ କାର୍ଯ୍ୟକ୍ରମରେ ସେ ଅଂଶଗ୍ରହଣ କରି ସେ ଟେଲିଭିଜନ ଆର୍ଟିଷ୍ଟ ଭାବରେ ପରିଚିତ । ଏହାଛଡ଼ା ବିଭିନ୍ନ ସମାଜ କଲ୍ୟାଣ କାର୍ଯ୍ୟରେ ମଧ୍ୟ ସେ ଜଡ଼ିତ । ନିଜ ଗାଁରେ ଶିକ୍ଷାର ପ୍ରସାର ପାଇଁ ସେ "ଚନ୍ଦ୍ରପୁର ହାଇସ୍କୁଲ", "କାମେଶ୍ୱର ଶିକ୍ଷାସଦନ" ନାମରେ ଦୁଇଟି ବିଦ୍ୟାଳୟ ପ୍ରତିଷ୍ଠା କରାଇଛନ୍ତି । ମୋଟାମୋଟି ଭାବରେ କହିବାକୁ ଗଲେ ସେ ଜଣେ ଖୁବ୍ ଭାଗ୍ୟବାନ୍ ବ୍ୟକ୍ତି । ତାଙ୍କ ଉପରେ ଭଗବାନଙ୍କର ସଦୟ ଦୃଷ୍ଟି ରହିଛି । ସେ ୧୯୭୬ ମସିହାର ନାଗାଲ୍ୟାଣ୍ଡ ଲଟେରୀର ପ୍ରଥମ ପୁରସ୍କାର ବିଜେତାର ଗୌରବ ଅର୍ଜନ କରି ଏକଲକ୍ଷ ଟଙ୍କା ପାଇଛନ୍ତି । ଏହି ପୁରସ୍କୃତ ଧନରୁ ଓଡ଼ିଆ ସାହିତ୍ୟର ଉନ୍ନତି କଳ୍ପେ "ଉତ୍କଳ ସାହିତ୍ୟ ସମାଜ" ପାଇଁ ଗୋଟିଏ ପୁରସ୍କାର ଘୋଷଣା କରିଛନ୍ତି ।

ବର୍ତ୍ତମାନ ୭୫ ବର୍ଷ ବୟସରେ ପ୍ରକାଶନ କ୍ଷେତ୍ରରେ ତାଙ୍କର ଯେଉଁ ସାହସ, ନିଷ୍ଠା ଏବଂ ଉଦ୍ଦୀପନା ରହିଛି ତାହା ବହୁ ଲେଖକଙ୍କୁ ସାହିତ୍ୟ କ୍ଷେତ୍ରରେ ନୂତନ ସୃଷ୍ଟି ପାଇଁ ଉତ୍ସାହିତ କରିବା ସଙ୍ଗେ ସଙ୍ଗେ ବହୁ ଲେଖକଙ୍କର ରଚନାବଳୀକୁ ମଧ୍ୟ ଲୋକଲୋଚନକୁ ଆଣି ପାରିବ । ଈଶ୍ୱର ତାଙ୍କୁ ଦୀର୍ଘଜୀବୀ କରନ୍ତୁ, ଏହାହିଁ କାମନା ।



ମୁଦ୍ରଣ : ରେଖା ପ୍ରେସ, ବାଲୁବଜାର ସାହି, କଟକ-୯

